

ଓଡ଼ିଆ ଭାଷାରେ ସର୍ବପ୍ରଥମ ।

ରାଜଶ୍ରୀ ପକେଟ ବୁକ୍ସ-୩୭

୨୪୩

# ଚନ୍ଦ୍ର ଅଭିଯାନ

( ବୈଜ୍ଞାନିକ ଉପନ୍ୟାସ )

ଜୁଲେଭର୍ନ

ପ୍ରକାଶକ :

ପ୍ରାଣକୃଷ୍ଣ ଦାସ

ରାଜଶ୍ରୀ ପ୍ରକାଶନୀ

୭୬ବ, ଅଖିଲ ମିସ୍ତ୍ରୀ ଲେନ୍

କଲିକତା-୯

ମୁଦ୍ରଣ :

କଳିଙ୍ଗ ମୁଦ୍ରଣୀ

୭୬ବ, ଅଖିଲ ମିସ୍ତ୍ରୀ ଲେନ୍

କଲିକତା-୯ ।

ପ୍ରଚ୍ଛଦ ଶିଳ୍ପୀ :

ଜୀବନ ସେନ୍ ।

ପ୍ରଥମ ପ୍ରକାଶ :

ଜାନୁଆରୀ - ୧୯୭୧

ମୂଲ୍ୟ : ଦୁଇଟଙ୍କା

*Price : Rs. 2·00*

FROM EARTH TO THE MOON

Science Fiction

*By-Jules Vernes*

Translated in to Oriya

CHANDRA AVIJAN

*By-Nigam Ranjan Mohanty.*



ଆମର ଘୋଷଣା ଅନୁସାରେ ୩୭ନମ୍ବର ବହି 'ନକ୍ଷିପଦ୍ମ' ହେବାର କଥା । କିନ୍ତୁ କେତେକ ଅନିବାର୍ଯ୍ୟ କାରଣ ବଶତଃ ତାହା ସମ୍ଭବ ହୋଇ ପାରିଲା ନାହିଁ । ନକ୍ଷିପଦ୍ମ ୩୮ ନମ୍ବର ବହି ହୋଇ ମାର୍ଚ୍ଚ ମାସରେ ପ୍ରକାଶ ପାଇବ ।

ରଜଶ୍ରୀ ପକେଟ ବୁକ୍‌ସର ପରବର୍ତ୍ତୀ ଆକର୍ଷଣ

## ଲୋହିତ ଅରଣ୍ୟ

( ଏକ ରୋମାଣ୍ଟିକ୍ ଉପନ୍ୟାସ )

ଅକ୍ଟୋବର ମାସ ତିନି ତାରିଖ ସନ୍ଧ୍ୟାରେ ଆମେରିକାର ବାଲ୍ଟିମୋର ସହରର ସୁବିଖ୍ୟାତ 'ଗନକ୍ଲବ'ର ବଡ଼ ହଲ ଘରେ ଗୋଟାଏ ସଭା ବସିଥିଲା । ଅନ୍ଧକାର ଧୀରେ ଧୀରେ ପୃଥିବୀକୁ ଗ୍ରାସ କରୁଥିଲା, ସାଙ୍ଗରେ ତାର ଅନୁଚର କୁହୁଡ଼ି । ଲୋକମାନଙ୍କର ଯିବା ଆସିବା ଏ ଭିତରେ ଆସ୍ତେ ଆସ୍ତେ କମି ଆସିଲାଣି । କିନ୍ତୁ ଘର ସଭାରେ ଅନେକ ଲୋକ ଉପସ୍ଥିତ ଥିଲେ ଏବଂ ସେମାନେ ସମସ୍ତେ 'ଗନ୍ କ୍ଲବର' ସଦସ୍ୟ ।

ସମାଗତମାନଙ୍କ ମଧ୍ୟରେ ଗୋଟିଏ ସାଧାରଣ ବୈଶିଷ୍ଟ୍ୟ ଥିଲା, ଏବଂ ସେଟି ସହଜରେ ଆଖିରେ ପଡ଼ିବା ଭଳି ; ସେମାନଙ୍କର କାହାରି ଶରୀର ନିଖୁଣ ନଥିଲା । କାହାର ହାତ ଅଛି, କିନ୍ତୁ ଗୋଟିଏ ଗୋଡ଼ ନାହିଁ ; ପୁଣି କାହାରି କାହାରି ହାତ ଗୋଡ଼ ଉଭୟ ଅଛି କିନ୍ତୁ ଆଖିଟିଏ ବା କାନଟିଏ ନାହିଁ । କାହାର କାଠର ହାତ, ବା କାଠର ଗୋଡ଼, କାହାରି କାହାରି ମଧ୍ୟ ପଥରର ଆଖି ।

ଅର୍ଥାତ୍ ସଭାରେ ଯେତେ ଜଣ ଲୋକ ଉପସ୍ଥିତ ଥିଲେ, ସେମାନଙ୍କର କାହାରି ଶରୀର ନିଖୁଣ ନୁହଁ, କିଛି ନା କିଛି ଅଙ୍ଗହାନି ହୋଇଛି ।

'ଗନକ୍ଲବ'ର ଯେଉଁମାନେ ସଭ୍ୟ ସେମାନଙ୍କର ଏକମାତ୍ର କାମ ଥିଲା କମାଣ, ବନ୍ଧୁକ ଓ ଗୋଳାବାରୁଦ ତିଆରି କରିବା । ସମ୍ମିଳନର ନାମଟା ସେଇଥିପାଇଁ 'ଗନକ୍ଲବ' ହୋଇଛି । ସବୁ ସଭ୍ୟମାନେ ପୁନପୁଣ ଗୋଲନ୍ଦାଜ ଏବଂ ସେଇ ହିସାବରେ ସେମାନଙ୍କର ନାମ ଓ ଖ୍ୟାତି ଦେଶ ବିଦେଶରେ ବ୍ୟାପିଥିଲା । କେଉଁ ଉପାୟରେ କମାଣ ତିଆରି କଲେ ବଡ଼ ବଡ଼ ଗୋଳା ଗୁଳିକୁ ବହୁତ ବହୁତ ଦୂରକୁ ନିକ୍ଷେପ କରାଯାଇ ପାରିବ, କ'ଣ କଲେ ସେଇ ଦୂର ଦୂରାନ୍ତର କମାଣ ଗୋଳା ମାତ୍ର କେତୋଟି ସେକେଣ୍ଡରେ ଅନେକ ଗୁଡ଼ିଏ ଜନଜୀବନ ଓ ଜିନିଷ ପତ୍ର ଧ୍ୱଂସ କରି ଦେଇ ପାରେ, 'ଗନକ୍ଲବର' ସୁବିଖ୍ୟାତ ସଦସ୍ୟମାନଙ୍କର ସେଇଟିହିଁ ଥିଲା ଏକମାତ୍ର ଚିନ୍ତାର ବିଷୟ । କମାଣ-ବନ୍ଧୁକ, ଗୋଳା, ବାରୁଦ—ଏଇ ସବୁ ଅସ୍ତ୍ର ଶସ୍ତ୍ରର ଶକ୍ତି ପରୀକ୍ଷା କରିବାକୁ ଯାଇ ସେମାନେ ଶରୀରର ଅଙ୍ଗପ୍ରତ୍ୟଙ୍ଗ ହରାନ୍ତି, କିନ୍ତୁ ସେଥିପାଇଁ ସେମାନେ କେବେ ହେଲେ ଅବଶୋଷ କରନ୍ତି ନାହିଁ, ବରଂ ସେଇଟି ଯେମିତି ସେମାନଙ୍କ ଦୁଃସାହସର ସୂଚନା ପ୍ରଚାର ହୋଇ ଉଠିଥିଲା । କ'ଣ କଲେ ଧ୍ୱଂସର ବେଗ ଆହୁରି ଯୋରରେ ବଢାଇ ହେବ କେମିତି ଆହୁରି ଅଧିକ ମନୁଷ୍ୟଙ୍କର ପ୍ରାଣହାନି ହେବ, ତାରି ନୂତନ କୌଣସି ପରିକଳ୍ପନାରେ ସେମାନେ ସାଫଲ୍ୟ ଲାଭ କରି ପାରିଲେ ମାନବ ଜନ୍ମ ତାଙ୍କର ସାର୍ଥକ ହୋଇଗଲା ।

କିନ୍ତୁ 'ଗନକ୍ଲବ'ର ସଦସ୍ୟମାନଙ୍କ ସମ୍ମୁଖରେ ମଧ୍ୟ ଦୁର୍ଦ୍ଦିନର ମେଘ ଦେଖା ଦେଲା । ଯେଉଁସବୁ ଯୁଦ୍ଧ ଚାଲିଥିଲା ହଠାତ୍ ସେ ସବୁ ବନ୍ଦ ହୋଇଗଲା । ପୃଥିବୀର ସବୁ ମଣିଷ ଯୁଦ୍ଧ ବିରୁଦ୍ଧରେ ଅଭିଯାନ ଚଳାଇଲେ । ଦେଶେ ଦେଶେ ଆମେ 'ଶାନ୍ତି ଚାହୁଁ' ଏଇ

ଧ୍ୱନୀ ଗଗନ ପବନ ମୁଖରିତ କଲା । ଏବଂ ଆଶ୍ଚର୍ଯ୍ୟ ହେବାଭଳି ଘଟଣା ହେଲେ ବି, ସତକୁ ସତ ଦିନେ ପୃଥିବୀର ସମସ୍ତ ଯୁଦ୍ଧ ବିଗ୍ରହ ବନ୍ଦ ହୋଇଗଲା । 'ଶାନ୍ତି ସ୍ଥାପିତ ହେଉ ସର୍ବତ୍ର'—ଏକଥାରେ କାହାର ଆପତ୍ତି ନଥିଲା, କିନ୍ତୁ ସତକୁ ସତ ଦିନେ ଯେତେବେଳେ ଯୁଦ୍ଧ ବନ୍ଦହୋଇଗଲା, 'ଗନକ୍ଲବ'ର ସଭ୍ୟମାନଙ୍କ ମୁଣ୍ଡରେ ହଠାତ୍ ଯେମିତି ବଜ୍ରପାତ ହେଲା । ସେମାନଙ୍କର ମନେହେଲା ସର୍ବନାଶ ହୋଇ ଯାଉଛି, ଆଉତ ଗୋଳା - ବାରୁଦ, କମାଣ - ବନ୍ଧୁକର ବ୍ୟବହାର ହେବନି ; ତାହେଲେ ଏସବୁ ଯନ୍ତ୍ରର ଉନ୍ନତି ହେଉଛି, ନା ଅବନତି ହେଉଛି, ସେଇ ତଥ୍ୟ କିପରି ଭାବରେ ଅବଗତ ହେବାକୁ ହେବ ? କିଲ୍ଲାରେ ସ୍ତୁପିକୃତ ହୋଇ ପଡ଼ିରହିଲା ଗୁଳି ବାରୁଦ, ଦିନେ ଯେଉଁସବୁ କମାଣ - ବନ୍ଧୁକର ଚକଚକ ଇସ୍ପାତ ଅଂଶଗୁଡ଼ିକ ସୂର୍ଯ୍ୟକିରଣରେ ଝଲସି ଉଠୁଥିଲା, ସେ ଗୁଡ଼ିକରେ ସବୁ କଳଙ୍କି ଲାଗିଗଲା, ଗୋଲନ୍ଦାଜ ମାନଙ୍କର ଶରୀର ଆଳସ୍ୟରେ ଅକର୍ମଣ୍ୟ ହୋଇଗଲା । ଦିନେ ଯେଉଁ ଜମିରେ କମାଣ ଗୁଳାଦ୍ୱାରା ହଜାର ହଜାର ଗ୍ରେଟ ବଡ଼ ଗାତ ହୋଇଥିଲା— ସେଇ ଗାତଗୁଡ଼ିକ ଆସ୍ତେ ଆସ୍ତେ ମାଟିରେ ପୋତି ହୋଇ ପଡ଼ିଲା, ଚାଷୀମାନେ ମନ ଖୁସିରେ ଫସଲ ଅମଳ କରିବାକୁ ଲାଗିଲେ ସେଇ ଜମିରୁ । 'ଗନକ୍ଲବର ସଭ୍ୟମାନେ ନିଜର ଆଖି ଆଗରେ ଦେଖିଲେ ସେମାନଙ୍କର ସମସ୍ତ କୀର୍ତ୍ତି ବିସ୍ମୃତିର ଗର୍ଭରେ ବିଲୀନ ହୋଇ ଯାଉଛି । ଇତିହାସର ତଥ୍ୟଲିପ୍ସୁ କୌଣସି ଅନୁସନ୍ଧିତ୍ସୁ ଲୋକ ଛଡ଼ା ସେମାନଙ୍କ କ୍ଲବର ନାମ କେହି ଆଉ ବିଶେଷ ଜାଣିବାକୁ ଚାହେଁନି । ଏପରିକି ଆମେରିକାରେ ସଦା ସର୍ବଦା ଲାଗି ରହୁଥିବା ଗୃହଯୁଦ୍ଧ ବି ଯେତେବେଳେ ବନ୍ଦ ହୋଇଗଲା ସେତେବେଳେ 'ଗନକ୍ଲବ'ର ସଦସ୍ୟମାନେ ସେମାନଙ୍କ ଆଖି ଆଗରେ ଦେଖି ପାରିଲେ ଜମାଟବନ୍ଧା ଅନ୍ଧକାର ; ସେମାନଙ୍କ ମୁଣ୍ଡରେ ଯେମିତି ଆକାଶ ଭାଙ୍ଗି ପଡ଼ିଲା । କ୍ଲବର ବଡ଼

ହଲ ଘରଟା ଖାଲି ପଡ଼ି ରହିଲା, ସଭ୍ୟମାନଙ୍କର ଭିଡ଼ ଆଉ ସେଠି ଜମିଲା ନାହିଁ । କୌଣସି ନୂତନ ସଭ୍ୟ ଆଉ କ୍ଲବରେ ଡକାହେଲେ ନାହିଁ, ନୂତନ କୌଣସି ମାରଣାସ୍ତ୍ର ଆବିଷ୍କାର କରି ସଭ୍ୟମାନେ ଯେଉଁ ଆନନ୍ଦ ଉତ୍ସବ କରୁଥିଲେ ତା ବି ଆଉ ଶୁଣାଗଲା ନାହିଁ । କାହିଁକି ବା ଆଉ ଭିଡ଼ ହେବ ? କାହିଁକି ବା ସମାବେଶ ହେବ ? ଆଉ ନୂତନ ମାରଣାସ୍ତ୍ର ଆବିଷ୍କାର କରି ଲାଭ କ'ଣ ? ଯେଉଁ ଯୁଦ୍ଧ ଲାଗି ଏସବୁର ପ୍ରୟୋଜନ ସେତ ବର୍ତ୍ତମାନ ବନ୍ଦ । କ୍ଲବର ଦୁ'ଚାରିଜଣ ବିଶିଷ୍ଟ ସଭ୍ୟଙ୍କ ବ୍ୟତୀତ ଆଉ କେହି ହେଲେ କ୍ଲବର ଦ୍ୱାର ପର୍ଯ୍ୟନ୍ତ ମାଡ଼ୁ ନାହାଁନ୍ତି । ଦେଶୀ ବିଦେଶୀ କେତେ ପ୍ରକାର ପତ୍ର - ପତ୍ରିକା ଟେବୁଲ ଉପରେ ପଡ଼ିରହୁଥିଲା, କିନ୍ତୁ ଗୋଟାକର ପ୍ୟାକେଟ ସୁଦ୍ଧା କେହି ଖୋଲି ଦେଖୁ ନଥିଲେ ।

ବହୁତ ଦିନ ପରେ, ଅକ୍ଟୋବର ମାସ ତିନି ତାରିଖ ଦିନ ଅକାରଣରେ ଅନେକ ସଭ୍ୟ 'ଗନକ୍ଲବର'ରେ ଉପସ୍ଥିତ ହୋଇଥିଲେ । ଘର କୋଣରେ ଚୁଲୀ ଭିତର ନିଆଁ ପୁଣି ଅନେକଦିନ ପରେ ଦାଉ ଦାଉ ହୋଇ ଜଳି କ୍ଲବଘରର ବାୟୁମଣ୍ଡଳକୁ ଉଷୁମ କରି ଦେଉଥିଲା । ସେଇ ନିଆଁ ତାପରେ ହାତ ସେକୁ ସେକୁ ହ୍ୱିଷ୍ଲର କ୍ଷୋଭ ସ୍ୱରରେ କହିଲେ, 'ଆମମାନଙ୍କର କିରକମ ଦୁର୍ଦ୍ଦିନ ପଡ଼ିଛି ଦେଖୁଛ ! ଏକଦମ କୁଡ଼ିଙ୍କ ପମ୍ରୁଟ ହୋଇ ଯାଉଛେ ଆସ୍ତେ ଆସ୍ତେ ! ଅଥଚ ଏମିତି ଦିନଥିଲା, ଯେତେବେଳେ କମାଣର ଗର୍ଜନରେ ନିଦ ଭାଙ୍ଗ ଥିଲା, ଏବଂ କମାଣ ନିର୍ଘୋଷ ଶୁଣି ଶୁଣି ଶୋଇ ପଡ଼ୁଥିଲି । ହାୟରେ ସେଦିନ ! ଜୀବନଟା ଅସହ୍ୟ ହୋଇ ଉଠିଲା ! ଆଉ କଣ ସେଦିନ ଫେରି ଆସିବ ? ସମସ୍ତ ଏବଂ ସ୍ରୋତରେ ଗୁଲିଯିବା କଥା କହି ହ୍ୱିଷ୍ଲର ଉତ୍ତେଜିତ ହୋଇଗଲେ ; ତାଙ୍କର କାଠଗୋଡ଼ଟି ଯେ ଚୁଲୀନିଆଁରେ ପୋଡ଼ି ଯାଉଛି ସେ କଥା ଖିଆଲ ନକରି ଖୁବ୍ ବଡ଼ ପାଟିରେ କହିବାକୁ ଲାଗିଲେ, ଇଚ୍ଛା କରି ଯେଉଁମାନେ ଶାନ୍ତି

ଆଣିଛନ୍ତି, ସେଇ ସବୁ ଲୋକଙ୍କୁ ଯନ୍ଦ୍ର ଅରେ ସାମନାରେ ଦେଖନ୍ତୁ !’

ବାଲ୍‌ସ୍‌ବ କହିଲେ, ‘ହୁଃ ! ଆଉ ସେଦିନ ଆସିବ ! ବାପ୍ସା ନା ପାଗଳା ! ସେ ସବୁ ଦିନଗୁଡ଼ିକ ସ୍ୱପ୍ନ ! ଆଗେ ଗୋଟାଏ କମାଣ ତିଆରି ହେଉ ନହେଉଣୁ ତାର ପରୀକ୍ଷା ଆରମ୍ଭ ହୋଇ ଯାଉଥିଲା । ତାପରେ ଯେମିତି ଶିବିରକୁ ଫେରୁଛୁ, ଯାଙ୍ଗେ ସାଙ୍ଗେ ବନ୍ଧୁମାନଙ୍କର ଯେଉଁ ଆନନ୍ଦୋଲ୍ଲାସ ! ପୁଣି କମାଣ ଯେଉଁଦିନ ବେଶୀ ମଣିଷ ମାରି ପାରିଲା ସେଦିନ ସେମାନଙ୍କର କି ଆନନ୍ଦ ! ସେଭଳି ଆଉ ହେଉନି କି ହେବନି !’

କ୍ଲବର ସେକ୍ରେଟାରୀ ମ୍ୟାନସନ ତାଙ୍କର ପ୍ଲାଷ୍ଟିକ ତିଆରି ଡାହାଣ ହାତର ଚକ କୁଣ୍ଡାଇ କୁଣ୍ଡାଇ କ୍ଷୋଭରେ କହିଲେ, ‘ଭାଗ୍ୟ ! ସବୁ ଭାଗ୍ୟର ଦୋଷ ! ଭବିଷ୍ୟତରେ ଯୁଦ୍ଧ ଲାଗିବାର ଆଉ କୌଣସି ସମ୍ଭାବନା ନାହିଁ । ଆଜି ସକାଳେ ବେକାର ବସି ବସି ଶେଷ ପର୍ଯ୍ୟନ୍ତ ଗୋଟାଏ ନୂତନ ଧରଣର କମାଣର ନକ୍‌ସା ଅଙ୍କନ କରି ପକାଇଛି । କେବଳ ନକ୍‌ସା ନୁହଁ, ମାପ ଚୁପ, ଓଜନ ସବୁ ଠିକ୍ କରିଛି । ଏ କମାଣ ଯଦି ବ୍ୟବହାର କରାଯାଆନ୍ତା ତାହେଲେ ଦେଖନ୍ତୁ ଯୁଦ୍ଧର ଗତି ଏକବାର ବଦଳି ଯାଇଛି ।’

କର୍ଣ୍ଣେଲ ବ୍ଲୁମ୍‌ସ୍‌ବ ଚଷମା ଖୋଲି ତାଙ୍କର ପଥରର ବାମ ଆଖିକୁ ରୁମାଲରେ ପୋଛି ପୋଛି କହିଲେ, ‘ସତେନା କ’ଣ ?’

‘ନିଶ୍ଚୟ’ ! ମ୍ୟାଟସନ୍ କହିଲେ, ଏଇ, ନକ୍‌ସାଟା ଦେଖନା ! କିନ୍ତୁ ଏ ବିଷୟରେ ମୁଣ୍ଡ ଖେଳେଇ ଲାଭ କ’ଣ ! ଏଥିରେ କିଛି କାମ ହେବନି । ଆମେରିକାର ଲୋକ ତ ଆଉ ଯୁଦ୍ଧ କରିବେ ନାହିଁ ।

କର୍ଣ୍ଣେଲ ବ୍ଲୁମ୍‌ସ୍‌ବ କହିଲେ, ‘ଯୁଦ୍ଧନା, ଆମେରିକା ଛାଡ଼ି ୟୁରୋପ ଯାଇ ଦିବା । ସେମାନେ ତ ଆଉ ଆମେରିକାନ୍ ନୁହନ୍ତି,

ଟିକେ ଉଦ୍ୟୋଗରେ ଦେଲେ ହେଲା, ଯାଙ୍କ ଯାଙ୍କ ଯୁକ୍ତି ଲଗାଇ ଦେବେ ।'

ହଣ୍ଟର ଅବାକ୍ ହୋଇ କହିଲେ, 'ସେଥିରେ ଆମର ଲାଭ କ'ଣ ?'

'ଲାଭମାନେ ? ସେମାନଙ୍କ ତରଫରୁ ହୋଇ କମାଣ ତିଆରି କରିବା । ମଣିଷମାରି କଳ ତିଆରି କରିବା ତ ? ସେ ଗୁଡ଼ା ଯେଉଁଠି ଇଚ୍ଛା ସେଠି କଲେ ହେଲା । ରକ୍ତର ରଙ୍ଗ ତ ସବୁ ଠାରେ ଲାଲ ! ତା'ଛଡ଼ା ଏଥିରେ ଆମର କାମ ବି ହେବ, କୌଣସି ଆମେରିକାନ ମଧ୍ୟ ମରିବେ ନାହିଁ ।

'ଯେତ୍, ସେ କଥା କଣ ହୁଏ ?' ହଣ୍ଟର କହିଲେ 'ଯୁଦ୍ଧ ହେଉ ବିଦେଶୀମାନଙ୍କ ପାଇଁ କମାଣ ତିଆରି କରିବ !'

ବ୍ଲୁମ୍‌ସ୍‌ବି ରାଗି ଉଠି କହିଲେ, 'କିଛି ନ କରିବାଠାରୁ ସେଇଟା ତ ଭଲ । କୁଣ୍ଠିଙ୍କ ଭଳି ବସି ବସି ଯାହା ଟିକେ ଜାଣିଥିଲି, ତାକୁ ଭୁଲି ଯିବାର ଯୋଗାଡ଼ ।'

ମ୍ୟାଟସନ କହିଲେ, 'ନା' ହୋ କର୍ଣ୍ଣେଲ, ତମର ଏଇ ବିଦେଶ ବିଶେଷତଃ ୟୁରୋପ ଯିବାର ଆଶା ଛାଡ଼ । ଜାହାଜ ଉନ୍ନତ କେଉଁଥିରେ ହୁଏ, ସେ ସବୁ ବୁଝିବାକୁ ସେମାନଙ୍କର ଅନେକ ଡେରି । ଆମେରିକା ଆଉ କେଉଁଠି ୟୁରୋପ, ଆମେରିକା ସାଙ୍ଗରେ ତାଙ୍କ ମତ କୌଣସି ରକମ ମିଳିବନି ।'

ହଣ୍ଟର କରୁଣ ସ୍ୱରରେ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ତା'ହେଲେ ଆଉ କ'ଣ କରିବା ; ହଳ, ଲଙ୍ଗଳ କୁଆଳୀ ନେଇ ଜମି ଚାଷ କରିବା, ନା ନହେଲେ ତିମିମାଛ ଧରି ତାର ଚର୍ବି ନେଇ ଚୁଲିରେ ବସେଇ ଶିଝାଇବା ! ହୁଁଃ ! ଯେତେ ସବୁ ଗୁଲିଖଟି ଗପ !'

ମ୍ୟାଟସନ ଟିକେ ଉତ୍ତେଜିତ ହୋଇ କହିଲେ, 'ଏତେ କାମ ଆଉ କରିବାକୁ ହେବନାହିଁ ହୋ ! ବିଦ୍ୱାନ କ'ଣ ଶାସ୍ତ୍ରରେ

ଘଟିବ ? ଦେଖନା, ଦୁ'ଦିନରେ ଯୁଦ୍ଧ ଲାଗି ଯିବ । ଫ୍ରାନ୍ସ କ'ଣ ଭୂଇଁରେ ଆମର ଖଣ୍ଡେ ଦୁ'ଖଣ୍ଡ ଜାହାଜ ଅଟକ ରଖିବନି ? ଇଂଲଣ୍ଡ କ'ଣ ଦୁ'ଚାରିଜଣ ଖୁଣୀ ୟାଙ୍କିଙ୍କୁ ଫାସୀ ଦେବନି ? ଅପେକ୍ଷା କର, ଗୋଟାଏ ଯୁଦ୍ଧ ହେଉଛି ! କେବଳ ଗୋଟାଏ ସୁଯୋଗକୁ ଅପେକ୍ଷା !'

'କିନ୍ତୁ, ମ୍ୟାଟସନ୍, ତୁମେ ଏ ତଥ୍ୟଟା ଭୁଲିଯାଉଛ କାହିଁକି ଯେ, ଆମେରିକାର ଚମଡ଼ା ମଇଁଷିଚମ ପରି ମୋଟ ହୋଇ ଯାଇଛି ଛୁଞ୍ଚି ଫୋଡ଼ିଲେ ଆଉ କଷ୍ଟ ହେଉନି । ପୋଡ଼ିଯାଉ ତମର ଏ ଆଶା । ଆମେ କ'ଣ ଆଉ ମଣିଷ ହୋଇ ଅଛନ୍ତି ! ନର୍କକୁ ଗଲେଣି, ଏକବାର ନର୍କକୁ ଗଲେଣି ! ନହେଲେ କଣ ଏତେଦିନ ଭିତରେ ଗ୍ରେଟ ବଡ଼ ଗୋଟିଏ ହେଲେ ଯୁଦ୍ଧ ଲାଗନ୍ତା ନାହିଁ ?'

ବ୍ଲମ୍‌ସ୍‌ବ୍ରି କହିଲେ, 'ଗୋଟିଏ ଯୁଦ୍ଧ ଲାଗାଇ ଦେଲେ କେମିତି ହୁଅନ୍ତା ?'

'କେମିତି ଲଗାଇବ ? ଯୁକ୍ତିସଂଗତ କାରଣ କାହିଁ ?'

'କାରଣ ?' ବ୍ଲମ୍‌ସ୍‌ବ୍ରି କହିଲେ, 'କାରଣର କ'ଣ ଅଭାବ ? ଏଇ ଦେଖ—ଆମେରିକା ଦିନେ କ'ଣ ଇଂରେଜମାନଙ୍କର ନଥିଲା ?'

'ହଁ ଥିଲା ! କିନ୍ତୁ ସେଥିରେ କ'ଣ ଅଛି ?'

'ସେଥିରେ କ'ଣ ଅଛି ? ତାହେଲେ ଇଂଲଣ୍ଡ ବା ଆମ ଦେଶ ନହେବ କାହିଁକି ?'

ବିଲ୍‌ସ୍‌ବ୍ରି ତାଙ୍କର ଭଙ୍ଗାଦାନ୍ତ କଡ଼ମଡ଼ କରି କହିଲେ, 'ହୁଁ ! ଯାଅନା ଥରେ ପ୍ରେସିଡେଣ୍ଟଙ୍କ ପାଖକୁ, ମଜା ବୁଝେଇ ଦେବେ ! ମୁଁ ତାଙ୍କୁ ଏଥର କିନ୍ତୁ ଭୋଟ ଦେଉନି !'

'କିଏ ଦେବ ? ହ୍ୱିଣ୍ଟର କହିଲେ, ଏଇ ନିଗୁଣ ଅକର୍ମଣ୍ୟ ଲୋକଟାକୁ ପୁଣି କିଏ ଭୋଟ ଦେବ ? ମୁଁ ତ ଦେଉନି !'

ସର୍ବସମ୍ମତି କ୍ରମେ ଏଇ ସିଦ୍ଧାନ୍ତ ଗ୍ରହଣ କରାଗଲା ଯେ

ଆମେରିକାର ବର୍ତ୍ତମାନ ପ୍ରେସିଡେଣ୍ଟଙ୍କୁ କେନ୍ଦ୍ର କେବେ ଭୋଟ ଦେବେନା । ଠିକ୍ ଏଇ ସମୟରେ ଉତ୍ତେଜିତ ସଭ୍ୟମାନେ ଦେଖିଲେ ଯେ କ୍ଲବର ବୋର୍ଡ଼ରେ ଆସି ଖୁବ୍ ବଡ଼ପାଟିରେ ଗୋଟାଏ ନୋଟିସ୍ ପଢ଼ୁଛି—

'ଗନକ୍ଲବର ସମ୍ପାଦକ ମି ଇମ୍ପେ ବର୍ବିକାନ୍ ସବିନୟରେ ସମସ୍ତ ସଦସ୍ୟମାନଙ୍କୁ ଜଣାଉଛନ୍ତି ଯେ, ଅଗାମୀ ପାଞ୍ଚ ତାରିଖ ଅକ୍ଟୋବର ରାତି ଆଠଟା ସମୟରେ ସେ ସଭ୍ୟମାନଙ୍କୁ ଏକ ଆଶ୍ଚର୍ଯ୍ୟ ଖବର ଶୁଣାଇବେ । ମି ବର୍ବିକାନ୍ ଆଶା କରନ୍ତି ଯେ ସକଳ ସଦସ୍ୟ ସମସ୍ତ କାର୍ଯ୍ୟ ପଛକୁ ରଖି ସେଦିନ ସଭାରେ ଉପସ୍ଥିତ ହେବେ । ପ୍ରତ୍ୟେକଙ୍କୁ ପୂର୍ବରୁ ଜଣାଇ ଦିଆ ଯାଉଛି ଯେ ସେଦିନ ଅନୁଷ୍ଠିତ ହେଉଥିବା ସଭାର ଆଲୋଚ୍ୟ ବିଷୟ ଅତ୍ୟନ୍ତ ଜରୁରୀ ।'

ଅକ୍‌ଟୋବର ପାଞ୍ଚ ତାରିଖ ଅପରାହ୍ଣରେ ଗଣକ୍ଲବର ମସ୍ତବଡ଼ ହଲ୍ ଘରଟାରେ ଆଉ ଗୋଟିଏ ଅଧିକ ଲୋକ ବସିବାର ସ୍ଥାନ ରହିଲା ନାହିଁ । ଗଣକ୍ଲବର ସଦସ୍ୟ ସଂଖ୍ୟା ତିରିଶ ହଜାରରୁ ବେଶୀ । ଘଣ୍ଟା ପରେ ଘଣ୍ଟା ପ୍ରତ୍ୟେକ ଟ୍ରେନ୍‌ରେ ସଭ୍ୟମାନେ ଆସିବାକୁ ଲାଗିଲେ । ଏତେ ବଡ଼ ହଲ୍‌ଘରଟାରେ ଆଉ ତିଳ ଧାରଣର ସ୍ଥାନ ରହିଲା ନାହିଁ । ଶେଷରେ ରାସ୍ତାର ଛକକୁ ଛକ ହଜାର ହଜାର ଲୋକ ଅପେକ୍ଷା କରିବାକୁ ଲାଗିଲେ । ଦରୱାନ୍ କ୍ଲବର ଫାଟକ ପାଖରେ ଜଗି ରହିଲା ; ସମିତିର ସଦସ୍ୟ ଛଡ଼ା ଆଉ କାହାରି ଭିତରକୁ ପ୍ରବେଶ ନିଷେଧ କରି ଦିଆଗଲା ।

କ୍ଲବର ବିରାଟ ଆଲୋକୋଜ୍ଜ୍ୱଳ ଘରର ଗୋଟିଏ କୋଣରେ ଗୋଟିଏ ଉଚ୍ଚମଞ୍ଚ ଉପରେ ସଭାପତିଙ୍କ ଆସନ ନିର୍ଦ୍ଦିଷ୍ଟ ହୋଇଥିଲା । ସେଇ ଆସନ କମାଣବାଣ୍ଟା ଗାଡ଼ି ଉପରେ ପ୍ରସ୍ତୁତ କରା ହୋଇଥିଲା । ଆସନର ସମ୍ମୁଖରେ ଟେବୁଲ ଏବଂ ଟେବୁଲ ସମ୍ମୁଖରେ ସଦସ୍ୟମାନଙ୍କ ବସିବା ପାଇଁ ଗ୍ୟାଲେରି କରା ଯାଇଥିଲା ।

ସଭାପତି ଇମ୍ପେ ବର୍ବିକାନ୍ ଧୀର, ସ୍ଥିର ଗମ୍ଭୀର ମଣିଷ । ତାଙ୍କର ପ୍ରତ୍ୟେକ କାମ କ୍ରନୋମିଟରର କଣ୍ଟାପରି ସେ କରି ଯାନ୍ତି । ଯେଉଁ କାମ ଅନ୍ୟମାନଙ୍କ କଳ୍ପନାର ବାହାରେ ଓ ଦୁଃସାଧ୍ୟ, ବର୍ବିକାନ୍ ଅବଲୀଳା କ୍ରମେ ତାହା କରି ପାରନ୍ତି । ସମିତିର ସଭ୍ୟମାନଙ୍କ ମଧ୍ୟରେ କେବଳ ତାଙ୍କରି ଦେହ ହିଁ ନିଖୁଣ ଥିଲା । ଅଥଚ

ତାଙ୍କ ପରି ନିତ୍ୟ ନୂତନ ଗୋଲା ବାରୁଦ - କମାଣ ବନ୍ଧୁକ କେନ୍ଦ୍ର ଆବିଷ୍କାର କରି ପାରି ନାହାନ୍ତି ।

ଆଠଟା ବାଜିବାକୁ ଯେତେବେଳେ ମାତ୍ର ଦେଢ଼ ମିନଟ୍ ବାକି, ସେତେବେଳେ ମୁଣ୍ଡରେ କଳା ରେଶମର ଟୋପି ଦେଇ ବର୍ବିକନ ମଞ୍ଚ ଉପରକୁ ଉଠିଲେ । ଘଣ୍ଟାରେ ଯେମିତି ଆଠଟା ବାଜିବାର ପ୍ରଥମ ଘଣ୍ଟା ଢଂ କରି ବାଜିଲା, ବର୍ବିକନ ଚେୟାର ଗ୍ରୁଣ୍ଡି ଉଠି ଗମ୍ଭୀର ସ୍ୱରରେ କହିବାକୁ ଆରମ୍ଭ କଲେ, 'ମୋର ବୀର ସହଯୋଗୀ ବୃନ୍ଦ ! ଆମର ସୁବିଖ୍ୟାତ ଗନକ୍ଲବର ସଦସ୍ୟମାନେ ଆଜି ଅତ୍ୟନ୍ତ ଅକର୍ମଣ୍ୟ ଭାବରେ ଯେଉଁ ଜୀବନ ଅତିବାହିତ କରୁଛନ୍ତି ତାହା ବାସ୍ତବିକ ବଡ଼ ଦୁଃଖ । ହଠାତ୍ ବିନା ମେଘରେ ବଜ୍ରପାତ ପରି ସମସ୍ତ ଯୁଦ୍ଧ ବନ୍ଦ ହୋଇ ଯାଇ ଆପୋସ-ମୀମାଂସା ହୋଇଯିବ, ଏକଥା କିଏ ଜାଣିଥିଲା ! ଏବଂ ଏଇ ଆପୋସ ଯେ ଦୀର୍ଘସ୍ଥାୟୀ ହେବ ତାହା ସମସ୍ତଙ୍କ ସ୍ୱପ୍ନର ଅଗୋଚରଥିଲା । ଅଥଚ ପ୍ରତି ସେକେଣ୍ଡ ନୂତନ ଯୁଦ୍ଧର ପ୍ରତୀକ୍ଷାରେ କଟାଇ ଏତେଦିନ ଆମେମାନେ ଏହି ତଥ୍ୟ ସମ୍ବନ୍ଧରେ ନିଃସନ୍ଦେହ ହୋଇଛେ ଯେ ନିକଟ ଭବିଷ୍ୟତରେ କୌଣସି ଯୁଦ୍ଧ ଲାଗିବାର ସମ୍ଭାବନା ନାହିଁ । ଆମେମାନେ କ'ଣ ତେବେ ଚୁପ ହୋଇ ବସି ରହିବା ? କମାଣ ବନ୍ଧୁକ ଗୋଲା-ବାରୁଦର ଆଉ କ'ଣ କିଛି ଉନ୍ନତି ହେବ ନାହିଁ ?

'ମୁଁ ଆପଣମାନଙ୍କୁ ପଚାରୁଛି, ଆଉ ଯଦି ଯୁଦ୍ଧ ନହୁଏ, ତାହେଲେ ଆମେମାନେ କ'ଣ ମୂର୍ଖ ପରି ନିଶ୍ଚେଷ୍ଟ ରହି ପ୍ରମାଣ କରାଇ ଦେବା ଯେ ଆମେମାନେ ଏଇ ଉନବିଂଶ ଶତାବ୍ଦୀର ଅଯୋଗ୍ୟ ? ମୁଁ ପୁଣି ପଚାରୁଛି ଯେ ପୃଥିବୀ ବିଖ୍ୟାତ 'ଗନ-କ୍ଲବ' କ'ଣ ଆଜି ତାର ସମ୍ମାନ ରକ୍ଷା କରିବା ପାଇଁ ନୂତନ ଧରଣର କୌଣସି ବିଶେଷ କାମରେ ଯୋଗ ଦେଇ ପାରିବ ନାହିଁ ?

ସ୍ୱର୍ଣ୍ଣାର ସ୍ୱର୍ଣ୍ଣର କଣ୍ଠ ଚିତ୍କାର କରି ଉଠିଲା, 'ହଁ, ହଁ ! ଗଗନ-କ୍ଲବ କୌଣସି ନୂତନ କାମ କରିବାକୁ ଚାହେଁ ।'

ବର୍ଜିନ ପୁଣି କହିଲେ, 'ବନ୍ଧୁଗଣ ! ମୁଁ ଅନେକ ଭାବି ଦେଖିଲି, ଗଗନ-କ୍ଲବ ବର୍ତ୍ତମାନ ଏପରି ଗୋଟିଏ କାମରେ ହାତଦେଇ ପାରେ, ଯାହା କେବଳ ଏଇ ଗଗନକ୍ଲବକୁ ସାଜିବ । ଯାହା କେବଳ ଆମେମାନଙ୍କୁ ସୁନ୍ଦର ଦିଶିବ । ସାରା ଦୁନିଆର ଲୋକ ସେକଥା ଶୁଣିଲେ ଅବାକ୍ ହୋଇଯିବେ ।'

ଏଇଠି ସ୍ୱର୍ଣ୍ଣାର କଣ୍ଠରୁ ଧ୍ୱନି ଉଠିଲା 'କ'ଣ ? କ'ଣ ସେ କାମ ?'

'ଆପଣମାନେ ମନଦେଇ ମୋ କଥା ଶୁଣନ୍ତୁ । ସେଇକଥା କହିବା ପାଇଁ ଏ ସଭାର ଆୟୋଜନ କରି ଆପଣମାନଙ୍କୁ ଡକାଇ ଅଣା ଯାଇଛି । ମୁଁ ନିଶ୍ଚିତ ଭାବରେ କହିପାରିବି ଯେ ଆପଣମାନେ ସମସ୍ତେ ପୃଥିବୀର ଉପଗ୍ରହ ଚନ୍ଦ୍ରକୁ ଦେଖିଛନ୍ତି । ଆମେମାନେ ସେଇ ଚନ୍ଦ୍ରଲୋକକୁ ଅଭିଯାନ କରିବାକୁ ଚାହୁଁଛେ , ଚନ୍ଦ୍ରଲୋକ ଆବିଷ୍କାର କରି ଆମେମାନେ ନୂତନ କଲମ୍ବସର ଭୂମିକାରେ ଅବତୀର୍ଣ୍ଣ ହେବାକୁ ଚାହାନ୍ତି । ଆମେରିକା ଯୁକ୍ତରାଜ୍ୟର ଅନ୍ତର୍ଭୁକ୍ତ ରାଜ୍ୟ ସଂଖ୍ୟା ବର୍ତ୍ତମାନ ଛତିଶଟି ; ଗଗନକ୍ଲବ ତାର ଯଥାଶକ୍ତି ବିନିଯୋଗ କରି ଆଉ ଗୋଟିଏ ନୂତନ ରାଜ୍ୟ ସେଥିରେ ଅନ୍ତର୍ଭୁକ୍ତ କରିବାକୁ ଚାହେଁ । ଚନ୍ଦ୍ରଲୋକ ମଧ୍ୟ ଆମ ଅଧୀନକୁ ଆସିବ ।'

ଆନନ୍ଦରେ ଗଗନକ୍ଲବର ସଭ୍ୟମାନେ ଏତେ ଜୋରରେ ଚିତ୍କାର କରି ଉଠିଲେ ଯେ ମନେ ହେଲା ଘରର ଛାତ ଯେମିତି ଭାଙ୍ଗି ପଡ଼ିଲା ।

'ବନ୍ଧୁଗଣ', ବର୍ଜିନଙ୍କର ଗମ୍ଭୀରସ୍ୱର ଶୁଣାଗଲା, 'ଆପଣମାନେ ଜାଣନ୍ତି ଯେ ଚନ୍ଦ୍ରଲୋକ ବିଷୟରେ ପ୍ରଚୁର ଆଲୋଚନା ହୋଇ ଯାଇଛି । ଚନ୍ଦ୍ରର ଗୁରୁତ୍ୱ, ଘନତ୍ୱ, ଅବସ୍ଥା, ଗତି, ଗଠନ ପ୍ରଣାଳୀ

ଓ ଦୂରତ୍ୱ ସମସ୍ତ ବିଷୟ ଅକ୍ତ ଆମେମାନେ ଜାଣନ୍ତି, ଏଇ ସୌର ଜଗତରେ ଚନ୍ଦ୍ର କି କାମ କରେ ତା ମଧ୍ୟ ଅମର ଜାଣିବାକୁ ବାକି ନାହିଁ । ଆପଣମାନେ ହୁଏତ ଚନ୍ଦ୍ରକୁ ନେଇ ଲେଖା ଅନେକ କାଳ୍ପନିକ ଗଳ୍ପ ପଢ଼ିଛନ୍ତି । ଚନ୍ଦ୍ରଲୋକକୁ ଯିବାର ଅନେକ ପରିକଳ୍ପନାର କଥା ଶୁଣିଛନ୍ତି, କିନ୍ତୁ ଏପର୍ଯ୍ୟନ୍ତ ସେ କାମରେ କେହି ସାହସ କରି ଆଗେଇ ଆସି ପାରି ନାହାନ୍ତି । ସୁତରାଂ ଚନ୍ଦ୍ରଲୋକ ଏପର୍ଯ୍ୟନ୍ତ ଅନାବିଷ୍କୃତ କହିଲେ ଭୁଲ ହେବନି । ସେଇ ଅଜଣା ସାମ୍ରାଜ୍ୟ ଆବିଷ୍କାର ଓ ଅଧିକାର କରି ଆମେମାନେ ହେବା ପୃଥିବୀର ସଭ୍ୟମାନଙ୍କର ଦୁର୍ଦ୍ଧର୍ଷ ଓ ଗୋଲମାଲ ଭିତରେ ଆଉ କିଛି ଶୁଭିଲା ନାହିଁ । କିଛି ସମୟ ପରେ ଯେତେବେଳେ ଉତ୍ତେଜନା କମିଲା, ବର୍ବିକାନ ପୁଣି ଆରମ୍ଭ କଲେ, 'ଆପଣମାନେ ହୁଏତ ଭାବୁଛନ୍ତି ଏ ବିଷୟ ଅସମ୍ଭବ, କିନ୍ତୁ ମୋତେ ନୁହେଁ—ବରଂ କହିବାକୁ ଗଲେ ଖୁବ୍ ସହଜ । ଗତ କେଇ ବର୍ଷରେ କମାଣର କ୍ଷମତା କେତେ ବଢ଼ିଛି, ତାର ଗୋଳା କେତେ ଦୂର ଯାଇପାରେ, ତା'ଛଡ଼ା ବିସ୍ଫୋରକର ମଧ୍ୟ କେତେକ ପରିମାଣରେ ଉନ୍ନତି ହୋଇଛି । ସେକଥା ବୋଧହୁଏ ଆପଣମାନଙ୍କୁ କହିଦେବାକୁ ପଡ଼ିବନି । ନିଃସନ୍ଦେହରେ ଆପଣମାନେ ଜାଣନ୍ତି ଯେ ଦକ୍ଷ ଲୋକ ନିକଟରୁ ବାରୁଦ କେତେ ଜୋର ପାଏ, କମାଣର ନିକ୍ଷେପ ଶକ୍ତି କେତେ ବୃଦ୍ଧି ପାଏ । ସେଇ କାରଣରୁ ମୁଁ ଭାବୁଥିଲି, ଚନ୍ଦ୍ରଲୋକକୁ ଆମ କମାଣର ଗୋଟିଏ ଗୋଳା ନିକ୍ଷେପ କରି ପାରିଲେ ଦୋଷ କ'ଣ ? ତଦ୍ୱାରା ଆମ କମାଣର ନିକ୍ଷେପ ଶକ୍ତି ପରୀକ୍ଷା କରି ନେଇ ହେବ, ଚନ୍ଦ୍ରଦେଶ ମଧ୍ୟ ଦଖଲ କରିନେଇ ହେବ ।'

ଅନ୍ଧାର ରାତିରେ ଝଲୁ ଝଲୁ ବିଜୁଳି ଆଲୁଅରେ ତା ଆଗରେ ଫଣା ଟେକି ଛିଡ଼ାହୋଇଥିବା ସାପକୁ ଦେଖିଲେ ମଣିଷ ଯେମିତି ସ୍ତମ୍ଭିତ ହୋଇ ଯାଏ, ବର୍ବିକାନଙ୍କର ଏଇ ପ୍ରସ୍ତାବ ଶୁଣି କ୍ଲବର

ସଦସ୍ୟମାନେ କିଛି ସମୟ ମୁହ୍ୟମାନ ହୋଇ ରହିଲେ । କିନ୍ତୁ ସମ୍ବିତ ଫେରିବା ସାଙ୍ଗେ ସାଙ୍ଗେ ସେଠି ଯେଉଁ ଉଲ୍ଲସିତ ଚିତ୍କାର ଉଠିଲା, ସେଥିରେ ମନ୍ତ୍ରକକ୍ଷ ହଲଟା ଥର ଥର ହୋଇ କମ୍ପି ଉଠିଲା । ବର୍ବିକନ ପୁଣି କଥା କହିବାର ଚେଷ୍ଟା କଲେ କିନ୍ତୁ ଆଉ ସମ୍ଭବ ହେଲାନି । ଏଇ ହଟ୍ଟଗୋଳ ମଧ୍ୟରେ ଆଉ କଥା କହିବାକୁ ଚେଷ୍ଟା କରିବା ପାଗଳାମି ଛଡ଼ା କିଛି ନୁହେଁ । କିଛି ସମୟ ପରେ ସଦସ୍ୟମାନେ ଯେତେବେଳେ ଟିକେ ଶାନ୍ତ ହେଲେ, ବର୍ବିକନଙ୍କ ଉଦାତ୍ତ କଣ୍ଠସ୍ୱରରେ ହଲଟା ପୁଣି ପୂରି ଉଠିଲା । ସେ କହିଲେ 'ମୋର ଆଉ ଗୋଟିଏ କଥା କହିବାକୁ ଅଛି, ମୁଁ ଏଇ କେତେଦିନ ଭିତରେ ଭଲ ଭାବରେ ହିସାବ କରି ଦେଖିଛି, ପ୍ରତି ସେକେଣ୍ଡରେ ବାରହଜାର ଗଜ ଯାଇ ପାରିବା ଭଳି ଗୋଟାଏ ଗୋଳା ଯଦି ଚନ୍ଦ୍ରକୁ ଫାଏର କରାଯାଏ, ତା'ହେଲେ ସେଇ ଗୁଳାଟି ନିଶ୍ଚୟ ଚନ୍ଦ୍ରରେ ପହଞ୍ଚିବ । ତେଣୁ ଆପଣମାନଙ୍କ ନିକଟରେ ମୋର ସବିନୟ ନିବେଦନ ଯେ, ଆପଣମାନେ ଆପାତତଃ କୁଣ୍ଠିଙ୍କ ପରି ନ ବସି, ଏଇ ସାମାନ୍ୟ କାମ ପାଇଁ ଟିକେ ମନୋନିବେଶ କରନ୍ତୁ ।'

ଗନକ୍ଲବର ସଭାପତି ବର୍ବିକେନ କ୍ଲବର ହଲରେ ଯେତେବେଳେ ବକ୍ତୃତା ଦେଉଥିଲେ, ତାଙ୍କର ସେହି ବକ୍ତୃତାକୁ ସାଙ୍ଗେ ସାଙ୍ଗେ ଟେଲିଗ୍ରାମ କରି ୱାଶିଂଟନ, ଫିଲାଡେଲ୍ ଫିଆ, ନ୍ୟୁୟର୍କ ଓ ବୋଷ୍ଟନକୁ ପଠା ହେଉଥିଲା । ସାରା ଆମେରିକା ଯେତେବେଳେ ବର୍ବିକେନଙ୍କର ପରିକଳ୍ପନା ଜାଣି ପାରିଲା, ତତ୍‌କ୍ଷଣାତ୍ ଉତ୍ସବ ଆରମ୍ଭ ହୋଇଗଲା । ଶ୍ୟାମ୍ପେନର ବନ୍ୟା ବହିଗଲା ; ସମସ୍ତ ଯୁକ୍ତରାଷ୍ଟ୍ର ଆମେରିକାରେ । ଯେମିତି ପାଳିତ ହେଲା ଜାତୀୟ ଉତ୍ସବ ।

ରାସ୍ତା ଘାଟରେ, ଦୋକାନ, ବଜାର, ପାନ୍ଥଶାଳାରେ, ରେସ୍ତୋରାଁରେ, କଫି ହାଉସରେ, ଅଫିସରେ, ବନ୍ଦରରେ ଯେଉଁଠି ଦୁଇଜଣ ଲୋକ ଭେଟା ଭେଟି ହେଲେ, ଆରମ୍ଭ ହୋଇଗଲା ଚନ୍ଦ୍ରର କଥା । ଆମେରିକାର ହଜାର ହଜାର ଖବର କାଗଜରେ ଚନ୍ଦ୍ରକୁ କମାଣର ଗୋଳା ପଠାଇବା କଥା ଆଲୋଚନା ସୁରୁ ହୋଇଗଲା । କେହି ସାମାଜିକ, କେହି ରାଜନୈତିକ, କେହି ବୈଜ୍ଞାନିକ, କେହିବା ଦାର୍ଶନିକ, ପୁଣି କେହି କେହି ସ୍ୱାସ୍ଥ୍ୟର ଦୃଷ୍ଟିକୋଣରୁ ବର୍ବିକେନଙ୍କ ପ୍ରସ୍ତାବଟି ବିଚାର କଲେ ଏବଂ ଶେଷରେ ସମସ୍ତେ ଗୋଟିଏ କଥା କହିଲେ ଯେ ଗନକ୍ଲବର ସଭାପତି ଇମ୍ପେ ବର୍ବିକେନ ଅସମ୍ଭବ କିଛି କହି ନାହାନ୍ତି । ଆମେରିକାନମାନେ ସବୁ ପାରନ୍ତି ଏବଂ ଏଇଥିପାଇଁ ଆମେରିକା ଓ ୟୁରୋପ ମଧ୍ୟରେ ଆକାଶ ପାତାଳ ବ୍ୟବଧାନ ।

ଇତମଧ୍ୟେ ବର୍ବିକେନ ତାଙ୍କର ନୂତନ ପ୍ରସ୍ତାବରେ ସାରା ଯୁକ୍ତରାଷ୍ଟ୍ରରେ ତୁମୁଳ ଆନ୍ଦୋଳନ ସୃଷ୍ଟି କରିଥିଲେ, କିନ୍ତୁ ତାଙ୍କର ସାବଲୀଳ ଧ୍ୟାନ ମୁଦ୍ରାରେ ଉତ୍ତେଜନାର କୌଣସି ଚିହ୍ନ ଦେଖାଗଲା ନାହିଁ । ଲୋକମାନେ ଯେତେବେଳେ କଳ୍ପନାରେ ଚନ୍ଦ୍ରକୁ ନିତ୍ୟନୂତନ ଅଭିଯାନ ଚଳାଉଛନ୍ତି, ସେତେବେଳେ ବର୍ବିକେନ ବିଭିନ୍ନ ବୈଜ୍ଞାନିକ ପ୍ରତିଷ୍ଠାନ ସହିତ ଯୋଗାଯୋଗ କରି ଚନ୍ଦ୍ରକୁ ଯିବାର ଉପାୟ ଠିକ୍ କରୁଥିଲେ ।

କେମ୍ବ୍ରିଜ ମାନମନ୍ଦିର ପୃଥିବୀରେ ସବୁଠାରୁ ବଡ଼ ଏବଂ ଭଲ ମାନମନ୍ଦିର ଭାବରେ ସୁନାମ ଅର୍ଜନ କରିଥିଲା । ସେଠାରୁ ଗୋଟିଏ ଚିଠି ପାଇ ବର୍ବିକେନ ଜାଣିପାରିଲେ ଯେ ପ୍ରତି ସେକେଣ୍ଡରେ ଯଦି କୌଣସି ଗୋଳା ବାରହଜାର ଗଜ ଯାଇପାରେ ତାହେଲେ ଅନାୟାସରେ ତାହା ଯାଇଁ ଚନ୍ଦ୍ରରେ ପହଞ୍ଚିବ । ମାଧ୍ୟାକର୍ଷଣର ନିୟମ ତାହେଲେ ଆଉ ସେ ଗୋଳା ଉପରେ ଲାଗୁ ହେବନି, ଅଭିକର୍ଷଣ ଶକ୍ତି ଆଉ ତାକୁ ପୃଥିବୀକୁ ଟାଣି ଓହ୍ଲାଇ ଦେଇ ପାରିବ ନାହିଁ । ଯାଉଁ ଯାଉଁ ଗୋଳାଟା ଏମିତି ଏକ ସ୍ଥାନରେ ପହଞ୍ଚିବ, ଯେଉଁଠି ପୃଥିବୀର ଆକର୍ଷଣ ଶକ୍ତି ଠାରୁ ଚନ୍ଦ୍ରର ଆକର୍ଷଣ ଶକ୍ତି ଅଧିକ, ଆଉ ତାରି ଫଳରେ ଗୋଳାଟା ଅଧିକ ବେଗରେ ଚନ୍ଦ୍ରଆଡ଼କୁ ଖସିଯିବ । ଗୋଳାଟା ଯଦି ପ୍ରତି ସେକେଣ୍ଡରେ ବାରହଜାର ଗଜ ଯାଇପାରନ୍ତା ତାହେଲେ ମାତ୍ର କେତୋଟି ଘଣ୍ଟାରେ ଚନ୍ଦ୍ରରେ ପହଞ୍ଚି ପାରନ୍ତା । କିନ୍ତୁ ସେପରି ତ ଆଉ ହୁଏନି ! ମାଧ୍ୟାକର୍ଷଣ ଶକ୍ତି ଅଛି, ପବନର ବାଧା ଅଛି, ଏବଂ ଏ ଦୁଇଟି ଫଳରେ ଆସ୍ତେ ଆସ୍ତେ ତାର ଗତିବେଗ କମିଆସିବ । ବୈଜ୍ଞାନିକମାନେ ଅଙ୍କ କଷି କହିଲେ, ଯେଉଁଠି ପୃଥିବୀର ଆକର୍ଷଣ ଶେଷ ହୋଇ ଚନ୍ଦ୍ରର ଆକର୍ଷଣ ଆରମ୍ଭ ହୋଇଛି ସେଠି ପହଞ୍ଚିବାକୁ ଗୋଳାକୁ ତିରିଶ ଘଣ୍ଟା କୋଡ଼ିଏ

ମିନିଟ ଲାଗିବ ଏବଂ ସେଠାରୁ ଚନ୍ଦ୍ରର ପ୍ରଦକ୍ଷିଣବାକୁ ଅଧିକ ତେର ଘଣ୍ଟା ତେପନ ମିନିଟ କୋଡ଼ିଏ ସେକେଣ୍ଡ ଲାଗିବ ।

ଚନ୍ଦ୍ର ପୃଥିବୀର ଚତୁର୍ଦ୍ଦିଗରେ ଘୂରେ ; କିନ୍ତୁ ବୃତ୍ତାକାରରେ ନୁହେଁ । ଘୂରୁ ଘୂରୁ ଯେତେବେଳେ ଚନ୍ଦ୍ର ପୃଥିବୀରୁ ସବୁଠାରୁ ଦୂରକୁ ଚାଲିଯାଏ, ସେତେବେଳେ ସେଇ ଦୂରତ୍ୱ ହୁଏ ଦୁଇଶ ତେତ୍ରିଶ ହଜାର ପଞ୍ଚଶ ବାଉନ୍ ମାଇଲ ଏବଂ ଯେତେବେଳେ ପୃଥିବୀର ସବୁଠାରୁ ନିକଟକୁ ଆସେ ସେତେବେଳେ ପୃଥିବୀଠାରୁ ଚନ୍ଦ୍ର ଅଠର ହଜାର ଛ'ଶହ ମାଇଲ ଦୂରରେ ରହେ, ତେଣୁ ଚନ୍ଦ୍ର ଯେତେବେଳେ ପୃଥିବୀଠାରୁ ନିକଟକୁ ଆସେ, ସେଇ ସମୟଟା ଗୋଳା ନିକ୍ଷେପ କରିବାର ପ୍ରକୃଷ୍ଟ ସମୟ ଏବଂ ସେଥିରେ ସୁବିଧା ମଧ୍ୟ ଅନେକ ।

ପ୍ରତ୍ୟେକ ମାସରେ ଚନ୍ଦ୍ର ଥରେ ପୃଥିବୀ ନିକଟକୁ ଆସେ, କିନ୍ତୁ ସବୁ ମାସରେ କେନଥ ବାହାରକୁ ଆସେନ । ଅନେକ ବର୍ଷ ପରେ ଚନ୍ଦ୍ର ପୃଥିବୀର ଖୁବ୍ ନିକଟକୁ ଆସେ । ବୈଜ୍ଞାନିକମାନେ ବର୍ବିକେନଙ୍କୁ ଜଣାଇଲେ ଯେ, ଆସନ୍ତା ବର୍ଷ ଡିସେମ୍ବର ଚାରି ତାରିଖ ରାତି ଦୁଇ ପ୍ରହର ସମୟରେ ଅନେକ ବର୍ଷ ପରେ ଚନ୍ଦ୍ର ଏଇ ଅବସ୍ଥାକୁ ଆସିବ । ତା' ଆଗରୁ ପହିଲା ଡିସେମ୍ବର ରାତି ଦଶଟା ଛୟାଳିଶ ମିନିଟ ଚାଳିଶ ସେକେଣ୍ଡ ସମୟରେ ଚନ୍ଦ୍ରକୁ ଲକ୍ଷ୍ୟ କରି କମାଣରୁ ଗୋଳା ନିକ୍ଷେପ କରିବାକୁ ହେବ । ଏଇ ସମୟ ହେଉଛି ସବୁଠାରୁ ଉପଯୁକ୍ତ ସମୟ, କାରଣ ସେତେବେଳେ ପୃଥିବୀଠାରୁ ଚନ୍ଦ୍ରର ଦୂରତ୍ୱ ଆଉ କେଇ ମାଇଲ୍ କମ୍ ହୋଇଯିବ, ଠିକ୍ ଏଇ ସମୟରେ କମାଣ ଫୁଟାଇ ନ ପାରିଲେ ଅଠର ବର୍ଷ ଏଗାର ଦିନ ଆଗରୁ ଚନ୍ଦ୍ର ପୃଥିବୀର ଏଇ ନିକଟତମ ଜାଗାଟିକୁ ଆଉ ଆସୁନି । ଆଉ କମାଣର ଗୋଳା ଦକ୍ଷିଣ ବା ଉତ୍ତର ଅକ୍ଷରେଖାର ଶୂନ ଡିଗ୍ରୀରୁ ଅଠାଇଶ ଡିଗ୍ରୀ ମଧ୍ୟରୁ କୌଣସି ସ୍ଥାନରୁ ନିକ୍ଷେପ

କରିବାକୁ ହେବ , ନହେଲେ ଅନ୍ୟ କୌଣସି ସ୍ଥାନରୁ ଯଦି ଗୋଳା ନିକ୍ଷେପ କରାଯାଏ ତେବେ ତାର ଗତି ଆସ୍ତେ ଆସ୍ତେ ବାଙ୍କିଯାଇ ଗୋଳାକୁ ଚନ୍ଦ୍ରରୁ ଅନେକ ଦୂରକୁ ନେଇଯିବ । ବୈଜ୍ଞାନିକମାନେ ଆହୁରି ମଧ୍ୟ କହିଲେ ଯେ, ଚନ୍ଦ୍ର ପ୍ରତ୍ୟେକ ଦିନ ତେରଡ଼ିଗ୍ରୀ ଦଶମିନଟ୍ ପଇଁତିରିଶ ସେକେଣ୍ଡ ଅତିକ୍ରମ କରେ । ଚନ୍ଦ୍ର ଯେତେ-ବେଳେ ଜେନିଥ୍ ଠାରୁ ଚୌଷଠି ଡ଼ିଗ୍ରୀ ଦୂରରେ ରହିବ, ଠିକ୍ ସେଇ ମୁହୂର୍ତ୍ତରେ ଚନ୍ଦ୍ରକୁ ଲକ୍ଷ୍ୟ କରି ଗୋଳା ନିକ୍ଷେପ କରିବାକୁ ହେବ ।

ଏ ସମସ୍ତ ବିଷୟ ଠିକ୍ ହୋଇ ଯିବା ପରେ, ଗନକ୍ଲବର ସଭ୍ୟମାନେ ଗୋଟିଏ ବିଶେଷ ବୈଠକରେ ମିଳିତ ହେଲେ । ସେଇ ବୈଠକରେ ଠିକ୍ ହେଲା ଲୁହାର ବା ପିତଳର ଗୋଳା ହେଲେ ଚଳିବ ନାହିଁ, କାରଣ ଗୋଳା ଅସମ୍ଭବ ଭାରି ହୋଇଯିବ ; କେବଳ ମାତ୍ର ଆଲମୁନିୟମର ଗୋଳା ହେଲେ ଏଇ ମାରାତ୍ମକ ଓଜନର ହାତରୁ ରକ୍ଷା ମିଳିବ । ଏବଂ ଏଇ ଗୋଳାର ବ୍ୟାସ ହେବ ନ' ଫୁଟ, କାରଣ ଆୟତନରେ ଆଉ ଛୋଟ ହେଲେ ପୃଥିବୀ ଶ୍ରେଷ୍ଠ ଦୂରବୀକ୍ଷଣ ଯନ୍ତ୍ରରେ ମଧ୍ୟ ଗୋଳାଟା ଦେଖି ହେବ ନାହିଁ । ଗୋଳାଟା ଫମ୍ପା କରିବାକୁ ହେବ ; ଯେମିତି ତା ଭିତରେ ପୃଥିବୀର ଦ' ଚାରିଟା ବିଷୟର ନମୁନା ପଠାଇ ଦିଆଯିବ । ନ'ଫୁଟ ବ୍ୟାସର ଗୋଳାଟାର ଓଜନ ହେବ ଦୁଇଶହ ଛୟାଳିଶ ମହଣ ପଚିଶ ସେର । କିନ୍ତୁ ଗୋଳାଟା ଯଦି ଲୁହାର ହେବ, ତା ହେଲେ ତାର ଓଜନ ହେବ ଆଠଶ ତେସ୍ତାଳିଶ ମହଣ । ତେଣୁ ସମସ୍ତେ ଏଇ ସିଦ୍ଧାନ୍ତ ଗ୍ରହଣ କଲେ ଯେ, ଆଲମୁନିୟମର ଗୋଳା ତିଆରି ହେବ । ହିସାବ କରି ଦେଖାଗଲା ଗୋଳା ତିଆରି କରିବାର ସମ୍ଭାବ୍ୟ ବ୍ୟୟ ପାଞ୍ଚଶହ ପଇଁଚାଳିଶ ହଜାର ସାତଶ ଏକାଅଶୀ ଟଙ୍କା ।

ଗୋଳାଟା କି ଧରଣର ହେବ, କେଉଁ ରକମର ହେବ, ସବୁ ଯେତେବେଳେ ଠିକ୍ ଠାକ୍ ହୋଇଗଲା, ସେତେବେଳେ ଏଇ ବିପୁଳ

ଓଜନର ନ ଫୁଟ ବ୍ୟାସ ବିଶିଷ୍ଟ ଗୋଲା ନିକ୍ଷେପକାରୀ କମାଣ ବିଷୟ ଉଠିଲା । ଏବଂ ଏ ପ୍ରଶ୍ନ ସାଙ୍ଗେ ସାଙ୍ଗେ କେମିତି ଏଇ ଗୋଲାର ଗତି ସେକେଣ୍ଡରେ ବାର ହଜାର ଗଜ କରାଯିବ ସେ ପ୍ରଶ୍ନ ମଧ୍ୟ ଉଠିଲା ।

ଶୂନ୍ୟକୁ ଗୋଟିଏ ଗୋଳା ନିକ୍ଷେପ କଲେ ତାହା ଯେଉଁ ବାୟୁସ୍ତର ଭେଦକରି ଯାଏ ସେଇ ବାୟୁସ୍ତର ତାକୁ ବାଧା ଦିଏ । ମାଧ୍ୟାକର୍ଷଣ ଶକ୍ତି ମଧ୍ୟ ତାକୁ ଅଟକାଇ ରଖିବାକୁ ଚେଷ୍ଟା କରେ । କିନ୍ତୁ ବାୟୁସ୍ତରର ପ୍ରତିରୋଧ ଓ ମାଧ୍ୟାକର୍ଷଣ ଶକ୍ତିର ଆକର୍ଷଣ ଅତିକ୍ରମ କରି ଗୋଲାଟି ବାରୁଦ ଶକ୍ତି ବଳରେ ଆଗେଇ ଯାଏ ଏବଂ ଏଇ ବାରୁଦହିଁ ତାକୁ ବେଗ ଦେଇଥାଏ । ପୃଥିବୀ ଠାରୁ ଚାଳିଶ ମାଇଲ ଉପରେ ଆଉ ବାୟୁସ୍ତର ନାହିଁ । ସୁତରାଂ ଯେଉଁ ଗୋଲା ସେକେଣ୍ଡ ପ୍ରତି ବାରହଜାର ଗଜ ବେଗରେ ଯାଇ ପାରିବ ସେଇଟି ଅବିଳମ୍ବେ ବାୟୁସ୍ତର ଭେଦକରି ଯାଇ ପାରିବ ସୁତରାଂ ମାତ୍ର କେଇଟି ସେକେଣ୍ଡ ପରେ ଉପରର ଆଉ ବାୟୁସ୍ତର ତାକୁ ବାଧା ଦେବାକୁ ନଥିବ । କିନ୍ତୁ ତାପରେ ବି ମାଧ୍ୟାକର୍ଷଣ ଶକ୍ତି ଅଛି । ମାଧ୍ୟାକର୍ଷଣ ଶକ୍ତିର ନିୟମାବଳୀ ପ୍ରୟୋଗ କରିବାକୁ ଯାଇ ବୈଜ୍ଞାନିକମାନେ କହନ୍ତି ଯେ କୌଣସି ଗୋଟିଏ ଜିନିଷ ଯେତେ ଉପରକୁ ଉଠିବ ତାର ଓଜନ ସେଇ ପରିମାଣ ଦୂରତ୍ୱର ବର୍ଗର ବିପରୀତ ଅନୁପାତରେ କ୍ରମେ କ୍ରମେ କମିବ । ଗୋଲାର ବେଗ ବଢାଇ ଦେଇ ପାରିଲେ ମାଧ୍ୟାକର୍ଷଣ ଅନାୟାସରେ ଅତିକ୍ରମ କରି ହେବ । ସେଇ ବେଗ କମାଣର ଦୈର୍ଘ୍ୟ ଓ ବାରୁଦର ଶକ୍ତି ଉପରେ ନିର୍ଭର କରେ । ତା ଅର୍ଥ କମାଣଟାକୁ ଖୁବ୍ ଲମ୍ବା କରିବାକୁ ହେବ । କାରଣ କମାଣର ନଳଟା ଯେତେ ଲମ୍ବ ହେବ, ଗୋଲା ପଛରେ ବାରୁଦର ଗ୍ୟାସ ସେଇ ପରିମାଣରେ ବେଶୀ ଭର୍ତ୍ତି ହେବ, ସୁତରାଂ ସେଇ କାରଣରୁ ଗୋଲାର ବେଗ ବଢ଼ିବ ।

ବର୍ବିକେନ ହିସାବ କରି ଜଣାଇ ଦେଲେ ଯେ, ଏଇ କାମ ପାଇଁ ଷୋଳଶ ହଜାର ମହଣ ବାରୁଦର ପ୍ରୟୋଜନ ହେବ । ଏକଥା ଶୁଣି କ୍ଲବର ସଦସ୍ୟମାନେ ଅବାକ୍ ହୋଇ ଗଲେ, କାରଣ ଷୋଳଶ ହଜାର ମହଣ ବାରୁଦ ରଖିବା ପାଇଁ ବାଇଶ ହଜାର ଘନଫୁଟ ସ୍ଥାନ ଦରକାର ହେବ । ତାପରେ ବାରୁଦ ଗ୍ୟାସ ପାଇଁ ମଧ୍ୟ ସ୍ଥାନ ଆବଶ୍ୟକ ହେବ । ଗୋଳା ରଖିବାର ମଧ୍ୟ ସ୍ଥାନ ଦରକାର ; ଅର୍ଥାତ୍ କମାଣ କେତେ ହଜାର ଘନଫୁଟ ଲମ୍ବ ହେବ । କିନ୍ତୁ ବର୍ବିକେନ ଜଣାଇ ଦେଲେ ଯେ, କମାଣରେ ଲମ୍ବ ହେବ ନ'ଶହ ଫୁଟ, ବ୍ୟାସ ନ'ଫୁଟ, ଋଇତା ଛ'ଫୁଟ ଏବଂ ତାର ଓଜନ ହେବ ଊଣାଇଶ ଲକ୍ଷ ପନ୍ଦର ହଜାର ଦୁଇଶ'ମହଣ । କମାଣଟିର ନିର୍ମାଣ ଖର୍ଚ୍ଚ ହେବ ଏଗାର୍ ଲକ୍ଷ ଅଠେଇଶ ହଜାର ଶହେ କୋଡ଼ିଏ ଟଙ୍କା ।

ଗନକ୍ଲବର ସେକ୍ରେଟାରୀ ମ୍ୟାଟ୍‌ସନ କହିଲେ, 'ଷୋଳଶ ହଜାର ମହଣ ବାରୁଦ ବାଇଶ ହଜାର ଘନଫୁଟ ଜାଗାରେ ରହିବ । ନ'ଶଫୁଟ ଲମ୍ବ ନଫୁଟ ବ୍ୟାସର କମାଣରେ ଅଳ୍ପ ବହୁତ ଚଉଦନ ହଜାର ଘନଫୁଟ ଜାଗା ଅଛି । ତାର ପ୍ରାୟ ଅଧା ଜାଗା ଯଦି କେବଳ ବାରୁଦ ରଖିବାକୁ ଲଗିଯାଏ, ତାହେଲେ ବାରୁଦର ଗ୍ୟାସ କେଉଁଠି ରହିବ ? ଗୋଳାଟା ତାହେଲେ ଯିବନି ।'

ଅବିଚଳିତ ସ୍ୱରରେ ବର୍ବିକେନ୍ କହିଲେ, 'ଆପଣମାନେ ଜାଣନ୍ତି, ଗଛଲତା ଓ ପତ୍ରରେ ଅଗଣିତ କୋଷ ଅଛି । ତୁଳାରେ ଏହି କୋଷ ଅଛି ସବୁଠାରୁ ବେଶୀ । ଉତ୍ତପ୍ତ ନାଇଟ୍ରିକ୍ ଏସିଡ଼ରେ ପନ୍ଦରମିନିଟ ତୁଳାକୁ ଭିଜାଇ ଶୁଖାଇ ନେଲେ ପୃଥିବୀର ସବୁଠାରୁ ମାରାତ୍ମକ ବିସ୍ଫୋରକ ପ୍ରସ୍ତୁତ ହୋଇଗଲା । ବାରୁଦ ଦୁଇଶ'ଷୋଳଶ ଡିଗ୍ରୀ ଉତ୍ତାପରେ ଜଳେ ଏବଂ ଏହି ତୁଳା ଶହେ ସତୁରି ଡିଗ୍ରୀ ଉତ୍ତାପରେ ଜଳିବ । ତା ଛଡ଼ା ଏଇ ତୁଳାର ଶକ୍ତି ହେବ ସାଧାରଣ ବାରୁଦ

ଠାରୁ ଗୃଶଗୁଣ ବେଶୀ । ଯେତିକ ପରିମାଣ ତୁଳା ଆବଶ୍ୟକ ହେବ, ତାର ଗୃଶ ପଞ୍ଚମାଂଶ ନାଇଟ୍ରେଟ୍-ଅଫ-ପଟାସ ତୁଳା ଦେହରେ ଲଗାଇ ନେଲେ ଗ୍ୟାସର ପ୍ରସାରଣ ଶକ୍ତି ଆହୁରି ଅନେକ ବଢ଼ିଯିବ । ଅର୍ଥାତ୍ ସ୍ଥଳଣ ହଜାର ମହଣ ବାରୁଦ ବଦଳରେ ଆମର ମାତ୍ର ପାଞ୍ଚହଜାର ମହଣ ତୁଳା ପ୍ରୟୋଜନ ହେବ । ଗୃପ ଦେଲେ ଛ'ମହଣ ଦଶସେର ତୁଳାକୁ ସତାଇଶ ଘନଫୁଟ ସ୍ଥାନ ମଧ୍ୟରେ ରଖାଯାଇ ପାରିବ । ସୁତରାଂ ଆମର ଯେତେ ତୁଳା ଆବଶ୍ୟକ ହେବ, ତାହା ଅନାୟାସରେ ଶହେ ଅଶୀ ଘନଫୁଟ ସ୍ଥାନ ମଧ୍ୟରେ ରଖାଯାଇ ପାରିବ । ଏହାର ଅର୍ଥ ହେଉଛି, ଆମର ନ'ଶହ ଘନଫୁଟ ଲମ୍ବ କମାଣ ପାଇଁ ପ୍ରୟୋଜନୀୟ ଗ୍ୟାସର ଅଭାବ ହେବନି ।

ତାପରେ ଅନେକ ତର୍କ-ବିତର୍କ ପରେ ପ୍ରଥମେ ସ୍ଥିର ହେଲଯେ ଟେକ୍ସାସ ନହେଲେ ଫ୍ଲୋରିଡ଼ା – ଏଇ ଦୁଇଟି ପ୍ରଦେଶରେ କୌଣସି ଏକ ସ୍ଥାନରୁ ଚନ୍ଦ୍ରକୁ ଗୋଳା ପଠାଇବାକୁ ହେବ । ସାଙ୍ଗେ ସାଙ୍ଗେ ଟେକ୍ସାସ ଓ ଫ୍ଲୋରିଡ଼ା ମଧ୍ୟରେ ଝଗଡ଼ା ଆରମ୍ଭ ହୋଇଗଲା । ଟେକ୍ସାସ କହିଲା "ପୃଥିବୀରୁ ଚନ୍ଦ୍ରଲୋକକୁ ପ୍ରଥମ ଗୋଳା ପଠାଇବାର ଗୌରବ ମୁଁ ଚାହେଁ" ଏବଂ ଏକଥା ଶୁଣି ଫ୍ଲୋରିଡ଼ା ସାଙ୍ଗେ ସାଙ୍ଗେ କହିଲା, ଚନ୍ଦ୍ର ସାଙ୍ଗରେ ପ୍ରଥମ ଆତ୍ମୀୟତାର ଜୟମାଳା ମୋର ପ୍ରାପ୍ୟ" ଟେକ୍ସାସର ଲୋକମାନେ ଦଳବାନ୍ଧି ବର୍ବିକେନଙ୍କ ସାଙ୍ଗରେ ଦେଖା କରିବାକୁ ବାଲ୍ଟିମୋର ଆସିଲେ । ଫ୍ଲୋରିଡ଼ାରୁ ମଧ୍ୟ ଅସଂଖ୍ୟ ଲୋକ ଗନକ୍ଲବକୁ ଆସିଲେ । ଦୁଇଦଳଙ୍କ ତର୍କ ଶୁଣି ଶୁଣି ସଭ୍ୟମାନଙ୍କର କାନ ଭାଁ ଭାଁ ହୋଇଗଲା । ମୁଣ୍ଡ ବୁଲାଇ ଦେଲା ଓ କାନର ପର୍ଦ୍ଦା ଫାଟି ଯିବା ଉପରେ ହେଲା । କିନ୍ତୁ କୌଣସି ମୀମାଂସାର ନାମଗନ୍ଧ ବି ଦେଖାଗଲା ନାହିଁ ।

ଶେଷରେ ଝଗଡ଼ା ଏତେ ଉପରକୁ ଉଠିଲା ଯେ, ଟେକ୍ସାସର ଲୋକମାନେ ଫ୍ଲୋରିଡ଼ାର ବାସିନ୍ଦାମାନଙ୍କୁ ରାସ୍ତାରେ ଦେଖିଲା

ମାଝେ ମାରଧର ଆରମ୍ଭ କରିଦେଲେ, ଆଉ ଫ୍ଲୋରିଡ଼ା ସରକାରଙ୍କ ଖାତରେ ଯୁଦ୍ଧ ଘୋଷଣା କରିବାକୁ ଆୟୋଜନ କରିବାକୁ ଲାଗିଲା । ଏଭଳି ଅବସ୍ଥା ଦେଖି ବର୍ବିକେନ ଘୋଷଣା କଲେଯେ, ଟେକ୍ସାସରେ ଅଛି ଏଗାରଟି ସହର ଓ ଫ୍ଲୋରିଡ଼ାରେ ମାତ୍ର ଗୋଟିଏ । ସୁତରାଂ ଫ୍ଲୋରିଡ଼ାକୁ ମନୋନୀତ ନକଲେ ଟେକ୍ସାସର ସହର - ସହର ମଧ୍ୟରେ ଲଢାଇ ଆରମ୍ଭ ହୋଇଯିବ ଏବଂ ପ୍ରତ୍ୟେକ କହିବେ "ମୋ ସହରରେ କମାଣ ତିଆରି ହେଉ ।"

ଗନକ୍ଲବର ସିଦ୍ଧାନ୍ତ ଯେତେବେଳେ ପ୍ରକାଶିତ ହେଲା, ସେତେବେଳେ କେବଳ ଆମେରିକାରେ ହୁଲୁସ୍ଥୁଲୁ ହେଲା ନାହିଁ, ସମଗ୍ର ପୃଥିବୀରେ ଜୋର ସୋରରେ ଆଲୋଚନା ହେଲା । କିଏ କହିଲା ଅଠାଇ ଶହ ମହଣର ଗୋଳା ବର୍ବିକେନ୍ ତିଆରି କରି ପାରିବେ ନାହିଁ, ଆଉ ନ'ଶହ ଫୁଟ ଲମ୍ବ କମାଣ ତିଆରି କରିବା ପାଗଳର ପ୍ରଳାପ । ତା ବ୍ୟତୀତ ଏସବୁ ତିଆରି କରିବାକୁ ତ ଆଉ କମ ଟଙ୍କାର ପ୍ରୟୋଜନ ହେବନି ! ସେଇ ଟଙ୍କା ଜୋଗାଡ଼ ହେବ କେଉଁଠୁ ? କିଏ କହିଲା ଏମିତିକା କମାଣରେ ବାରୁଦ ଭର୍ତ୍ତି କରିବା ଅସମ୍ଭବ ; କୌଣସି ମତେ ଯଦି ବାରୁଦ ଭର୍ତ୍ତି କରାଯାଏ, ତେବେ ଅଠାଇଶ ମହଣ ଓଜନର ଗୋଳା ଉପରେ ସେଗୁଡ଼ିକ ଆପେ ଆପେ ଜଳି ଉଠିବ । କିଏ ବା କହିଲେ ବାରୁଦରେ ନିଆଁ ଲଗାଇବା ସଙ୍ଗେ ସଙ୍ଗେ କମାଣ ଫାଟି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ । ଅନେକ ବି ମୁହେଁ ମୁହେଁ କହିଲେ, କମାଣର ଗୋଳା ଦଶମାଇଲ ମଧ୍ୟ ଯିବନି, ଚନ୍ଦ୍ରରେ ପହଞ୍ଚିବା ତ ଦୂରର କଥା । କେହିବି ବର୍ବିକେନଙ୍କ ସକଳ ସିଦ୍ଧାନ୍ତ ସମ୍ଭବ ବୋଲି ଉଚ୍ଚ କଣ୍ଠରେ ଘୋଷଣା କଲେ । ବର୍ବିକେନଙ୍କ ସପକ୍ଷରେ ଓ ବିପକ୍ଷରେ ଦୁଇଟି ଦଳ ଛିଡ଼ା ହୋଇ ଗଲେ ।

ବର୍ବିକେନ କିନ୍ତୁ ଏସବୁ ଉତ୍ତେଜନାକୁ ଗ୍ରାହ୍ୟ କଲେ ନାହିଁ । ତାଙ୍କର ନିର୍ବିକାର ମୁହଁରୁ ଭଲ - ମନ୍ଦ କୌଣସିଟିର ଆଭାସ ମିଳିଲା

ନାହିଁ । ଏଇସବୁ ନାନା ଧରଣର ହଇଁହାଲ୍ଲା ଭିତରେ ବର୍ବିକେନ୍ କମାଣ ତିଆରି ସ୍ଥାନ ଠିକ୍ କରିବାକୁ ଫ୍ଲୋରିଡ଼ା ଯାତ୍ରାକଲେ । ଅନେକ ଦେଖା ଖୁହାଁ ପରେ ଷ୍ଟୋନହିଲ ତାଙ୍କର ପସନ୍ଦ ହେଲା ; ଘୋଷଣା କରା ହେଲା ଯେ, ଏଇ ଷ୍ଟୋନହିଲର ଚୂଡ଼ାଠୁ ଚନ୍ଦ୍ରଲୋକକୁ ଲକ୍ଷ୍ୟକରି କମାଣ ଦଗା ହେବ ।

ଇମ୍ପେ ବର୍ବିକେନ୍ ସମଗ୍ର ପୃଥିବୀରେ ଏକମାତ୍ର ଯାହାର ନିନ୍ଦା ପ୍ରଶଂସାକୁ ଗ୍ରାହ୍ୟ କରନ୍ତି, ସେ ମଧ୍ୟ ବର୍ବିକେନଙ୍କ ପରି ପରିଶ୍ରମୀ, ଦୃଢ଼ଚେତା, ଦୁଃସାହସୀ ଓ ସର୍ବୋପରି ବର୍ବିକେନଙ୍କ ସହିତ ତାଙ୍କର ଚିରଦିନର ପ୍ରତିଦ୍ୱନ୍ଦ୍ୱିତା । ତାଙ୍କର ନାମ କ୍ୟାପ୍‌ଟେନ ନିକଲ । ବିପଦ ମୁହଁରେ ଲମ୍ଫ ଦେବାକୁ ସେ କେତେବେଳେ ହେଲେ ପଶ୍ଚାତପଦ ହେଉ ନଥିଲେ । ସାରା ଆମେରିକା ଯୁକ୍ତ ରାଷ୍ଟ୍ରରେ ଯେତେବେଳେ ଇମ୍ପେ ବର୍ବିକେନଙ୍କର ଜୟଗାନ ଗାଇବାକୁ ଆରମ୍ଭ ହୋଇଗଲା, ସେତେବେଳେ ଫିଲାଡେଲ୍‌ଫିଆରେ ବସି କ୍ୟାପ୍‌ଟେନ ହିଂସାରେ ଖାଲି ଜଳିବାକୁ ଲାଗିଲେ ।

କ୍ୟାପ୍‌ଟେନ୍ ନିକଲ ଓ ଇମ୍ପେ ବର୍ବିକେନ୍‌ଙ୍କ ମଧ୍ୟରେ ପରିଚୟ ନଥିଲା, ସାରାଜୀବନ କେଉଁଠି ହେଲେ ଭେଟ ଭେଟି ହୋଇ ନାହାନ୍ତି ସେମାନେ ; ଅଥଚ ବର୍ବିକେନଙ୍କୁ ବିଫଳ ହେବାର ଦେଖିଲେ କ୍ୟାପ୍‌ଟେନ ନିକଲ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଯାଉଥିଲେ । ବର୍ବିକେନ ଯେତେ ଶକ୍ତିଶାଳୀ କମାଣ ତିଆରି କରୁଥିଲେ, ନିକଲ ସେଇ ଅନୁଯାୟୀ ସୁଦୃଢ଼ ବର୍ମ ତିଆରି କରୁଥିଲେ । ବର୍ବିକେନଙ୍କର ଇଚ୍ଛା ଯେ କୌଣସି କଠିନତମ ପଦାର୍ଥକୁ କମାଣ ଗୋଳା ଦ୍ୱାରା ଶତଛିଦ୍ର ଜାଲିପରି କରି ନେବାକୁ ଏବଂ ନିକଲଙ୍କର କାମଥିଲା ବର୍ବିକେନଙ୍କର ସଂକଳ୍ପକୁ ବ୍ୟର୍ଥ କରିବା । ଦୁଇଜଣଙ୍କର ଏଇ ପ୍ରତିଦ୍ୱନ୍ଦ୍ୱିତାରେ କିନ୍ତୁ କମାଣ ଓ ବର୍ମର ଖୁବ୍ ଉନ୍ନତି ହୋଇଥିଲା, ଏବଂ ସେଇଥି ପାଇଁ ଏଇ ଦୁଇ ପ୍ରତିଯୋଗୀଙ୍କ ମଧ୍ୟରେ

କିଏ ବିଶ୍ବ କହିବା ସମ୍ଭବ ନୁହେଁ । ତେବେ ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ ଦୁଇଜଣଙ୍କ ଦୁଇଜଣଙ୍କର ଯୋଗ୍ୟ ପ୍ରତିଦ୍ୱନ୍ଦୀ ।

କ୍ୟାପ୍‌ଟେନ ନିକଲ ଯେତେବେଳେ ଶୁଣି ପାରିଲେ ଯେ ବର୍ବିକେନଙ୍କର ନୂତନ କମାଣ ନଳଟିର ଲମ୍ବ ହେବ ନ'ଶ ଫୁଟ ଏବଂ ଗୋଳାର ଓଜନ ହେବ ଦୁଇଶହ ଷ୍ଟକ୍‌ଶ ମହଣ, ପଚଶ ସେର, ନୈରାଶ୍ୟରେ ସେ ଏକବାର ଭାଙ୍ଗି ପଡ଼ିଲେ । ଭାବନାରେ ସେ କୂଳ କିନାରା କରି ପାରିଲେ ନାହିଁ । ବର୍ତ୍ତମାନ ତାଙ୍କର କ'ଣ କାମ । କେବଳ ଭାବିବାକୁ ଲାଗିଲେ ଏପରି କୌଣସି ବର୍ମ କଣ ତିଆରି କରିବା ସମ୍ଭବ, ଯେଉଁଥିରେ ଏଇ ଗୋଳା ପ୍ରତିହତ ହେବ । ଏମିତି ବର୍ମ କଣ ତିଆରି କରି ହେବ, ଯେଉଁଥିରେ ଏଇ ଗୋଳାର ଶକ୍ତି କାଟି କରିବ ନାହିଁ । କିନ୍ତୁ ସେ କୌଣସି ଭରସା ପାଇଲେ ନାହିଁ, ସୃଷ୍ଟି ବୁଝି ପାରିଲେ ଏମିତି କୌଣସି ବର୍ମ ତିଆରି କରିବା ଅସମ୍ଭବ ।

ସୁତରାଂ ଈର୍ଷାରେ ସେ ଅଦ୍ଭୁତ ଭୟଙ୍କର ହୋଇ ଉଠିଲେ । ଅଙ୍କ ପରେ ଅଙ୍କ କଷି, ବିଜ୍ଞାନ ସମ୍ମତ ନାନାପ୍ରକାର ଆଲୋଚନା କରି ସେ ପ୍ରମାଣ କରିବାକୁ ଚାହିଁଲେ ଯେ ଗନକ୍ଲବର ସଭାପତିର ପରିକଳ୍ପନାଟି ପାଗଳାର କଳ୍ପନା ବିଳାସ ବ୍ୟତୀତ ଅନ୍ୟ କିଛି ନୁହେଁ । ବାତୁଳ ନହେଲେ କ'ଣ କୌଣସି ଲୋକ ଏମିତି ଗୁଲ୍‌ଖଟି କଥା କଳ୍ପନା କରିପାରେ ? ବର୍ବିକେନଙ୍କୁ ମାନସିକ ହସ୍ପିଟାଲକୁ ପଠାଯାଉ—ଏଇ କଥା ସେ ବାରମ୍ବାର କହିଲେ । ତଥାପି ବର୍ବିକେନ ଯେତେବେଳେ ତାଙ୍କ ସଙ୍କଳ୍ପରେ ଅଟଳ ରହିଲେ, ବରଂ କମାଣ ଏବଂ ଗୋଳା ତିଆରି କରିବା ପାଇଁ ପ୍ରବଳ ଉତ୍ସାହରେ ପ୍ରାରମ୍ଭିକ ଆୟୋଜନ କରିବାକୁ ଲାଗିଲେ, ସେତେବେଳେ କ୍ୟାପ୍‌ଟେନ ନିକଲ ସରକାରଙ୍କୁ କହିଲେ ଯେ, ବର୍ବିକେନ ବେଆଇନ କାମ କରିବାକୁ ଯାଉଛନ୍ତି ! ଏପରି ଭାବରେ କମାଣର

ଶକ୍ତି ପରୀକ୍ଷା କରିବା ସ୍ୱଭିମତ ଅନ୍ୟାଯ୍ୟ ; କମାଣର ଶକ୍ତି ପରୀକ୍ଷା କରିବା ସମୟରେ ଯଦି କମାଣ ଫାଟିଯାଏ ତାହେଲେ ଅଗଣିତ ଲୋକ ପ୍ରାଣ ହରାଇବେ । ଯେଉଁ ସ୍ଥାନରେ ପରୀକ୍ଷା ହେବ ସେ ସ୍ଥାନଟି ମଧ୍ୟ ପୂରାପୂରି ଧ୍ୱଂସ ହୋଇ ଯାଇପାରେ ; କିମ୍ବା ଏମିତି ବି ହୋଇ ପାରେ ଯେ ବର୍ବିକେନ ଶାନ୍ତିଭଙ୍ଗ କରି ଯୁଦ୍ଧ ଲଗାଇଦେବା ଉଦ୍ଦେଶ୍ୟରେ ଏଇ କମାଣ ତିଆରି କରୁଛନ୍ତି ।

ସରକାର କିନ୍ତୁ କ୍ୟାପ୍‌ଟେନ ନିକଲଙ୍କ କଥାରେ କାନ ଦେଲେନି, ବରଂ ଚୁପ୍‌ରହି ବର୍ବିକେନଙ୍କ ପ୍ରସ୍ତାବରେ ସମ୍ମତି ଜଣାଇଲେ । ସରକାରଙ୍କ ହାବଭାବ ଦେଖି ନିକଲ ଆହୁରି ରାଗିଗଲେ । ବର୍ବିକେନଙ୍କ ବିରୁଦ୍ଧରେ ନାନାପ୍ରକାର ପ୍ରବନ୍ଧ ରଚନା କରି ସେ ଖବର କାଗଜରେ ପ୍ରକାଶ କରିବାକୁ ଲାଗିଲେ । କିନ୍ତୁ ସେଥିରେ ବି ଜନମତ ତାଙ୍କ ସପକ୍ଷରେ ହେଲା ନାହିଁ । ତେଣୁ ସେ ଖବର କାଗଜ ମାଧ୍ୟମରେ ପ୍ରକାଶ୍ୟରେ ବର୍ବିକେନଙ୍କ ସାଙ୍ଗରେ ନିମ୍ନ କଥାଗୁଡ଼ିକ ଉଲ୍ଲେଖକରି ବାଜି ଲଗାଇଲେ—

(କ) ଗନକ୍ଲବର ନୂତନ ପରିକଳ୍ପନାଟିକୁ ସଫଳ କରିବାକୁ ଯେତେ ଟଙ୍କା ଆବଶ୍ୟକ ହେବ, ତାହା କେବେହେଲେ ଯୋଗାଡ଼ କରି ହେବନି ।

ବାଜି—ଏକହଜାର ଏକଶହ ପଚିଶ ଡଲାର ।

(ଖ) ନ'ଶହ ଫୁଟ ଲମ୍ବା କମାଣ ଛାଞ୍ଚରେ ଢାଳିବା ସମ୍ଭବ ହେବ ନାହିଁ ।

ବାଜି—ଦୁ'ହଜାର ଦୁ'ଶହ ପଚିଶ ଡଲାର ।

(ଗ) ଯଦିବା କମାଣ ତିଆରି କରିବା ସମ୍ଭବ ହେବ, କମାଣରେ ବାରୁଦ ଭର୍ତ୍ତିକରିବା କୌଣସି ମତେ ସମ୍ଭବ ହେବ ନାହିଁ । କାରଣ ଅଠାଇଶହ ମହଣ ଓଜନ ଗୋଲାର ଚାପରେ ବାରୁଦ ଆପଣା ଛାଏଁ ଜଳି ଉଠିବ ।

ବାଜି—ତିନି ହଜାର ତିନିଶ ପଚିଶ ଡଲାର ।

(ଘ) ବାରୁଦରେ ଅଗ୍ନି ସଂଯୋଗ ସାଙ୍ଗେ ସାଙ୍ଗେ କମାଣଟି ପଲକମାତ୍ରେ ଫାଟି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ । ଯଦି ଏହା ନହୁଏ ତେବେ ମୁଁ ମି: ଇମ୍ପେ ବର୍ବିକେନଙ୍କୁ ଚାରିହଜାର ଚାରିଶ ଡଲାର ଦେବାକୁ ବାଧ୍ୟ ହେବି ଏବଂ

(ଙ) କମାଣ ଯଦି ନିତାନ୍ତ ଚୂର୍ଣ୍ଣ ବିଚୂର୍ଣ୍ଣ ନ ହୋଇ ଯାଏ, ତାହେଲେ ଚନ୍ଦ୍ର ତ ଦୂରର କଥା, କମାଣର ଗୋଲା ଦଶମାଇଲ ବି ଯିବ ନାହିଁ ।

ବାଜି—ଆଠହଜାର ନ'ଶ ଡଲାର ।

ଅର୍ଥାତ୍ କମାଣର ଗୋଲା ଯଦି ଦଶମାଇଲ୍ ଅତିକ୍ରମ କରିପାରେ ତାହେଲେ ମୁଁ ମି· ଇମ୍ପେ ବର୍ବିକେନଙ୍କୁ କୋଡ଼ିଏ ହଜାର ପଚିଶ ଡଲାର ଦେବାକୁ ଆଇନତଃ ଏବଂ ନ୍ୟାୟତଃ ବାଧ୍ୟ ରହିବି ।

ସ୍ୱାକ୍ଷର—କ୍ୟାପ୍ଟେନ ନିକଲ୍ ।

କେତୋଟି ଦିନ ପରେ କ୍ୟାପ୍ଟେନ ନିକଲ୍ ଗନକ୍ଲବର ସିଲ୍‌ମୋହର ଦିଆ ଗୋଟିଏ ଲଫାପା ପାଇଲେ । ତା ମଧ୍ୟରେ ଗୋଟିଏ ମୂଲ୍ୟବାନ ଚିଠି ଲେଖା କାଗଜ ମଧ୍ୟରେ କେବଳ ଗୋଟିଏ ଲାଇନ୍ ଲେଖା ମୁଁ ଆପଣଙ୍କ ବାଜିରେ ଅଙ୍ଗୀକାର କଲି ।

ବର୍ବିକେନ

ସଭାପତି ଗନକ୍ଲବ

ପୃଥିବୀର ପ୍ରତ୍ୟେକ ଦେଶରୁ ଗନକ୍ଲବ ନାଁରେ ଚାନ୍ଦା ଆସିବାକୁ ଲାଗିଲା । ଚାନ୍ଦା ଏତେ ପରିମାଣରେ ଆସିଲା ଯେ ଡାକଘରର ଲୋକମାନେ ମନିଅର୍ଡର ଦେଇ ଦେଇ ହଇରାଣ । କିଛିଦିନ ପରେ ବର୍ବିକେନ ଲେଖିଲେ ଯେ ଗନକ୍ଲବ ନାଁରେ ପ୍ରାୟ ଛଅ କୋଟି ଟଙ୍କା ଜମା ହୋଇ ଯାଇଛି । କମାଣ ଓ ଗୋଲା ତିଆରି କାମ ଅତି ଉତ୍ସାହରେ ଆରମ୍ଭ ହେଲା ।

ଇଂଜିନିୟର ମର୍ଚ୍ଚିସନ ଦୁଇହଜାର ଶ୍ରମିକ ନେଇ ଷ୍ଟୋନ-ହିଲ୍‌ରେ କାମ ଆରମ୍ଭ କରିଦେଲେ । ଏତେଦିନ ଜନହୀନ ହୋଇ ପଡ଼ି ରହିଥିବା ଷ୍ଟୋନହିଲ ସପ୍ତାହକ ମଧ୍ୟରେ ଗୋଟିଏ ଜନବହୁଳ ଆଧୁନିକ ସହରରେ ପରିଣତ ହୋଇଗଲା । କେଇଦିନ ଧରି ଜାହାଜରୁ କେବଳ କଳକବ୍‌ଜା ଓ ଯନ୍ତ୍ରପାତି ଅଣାଗଲା । ଶାବଳ, କୁରାଢ଼ୀ, କୋଦାଳ, ହାତୁଡ଼ି ଇତ୍ୟାଦି ଯେ କେତେ ଆସିଲା ସେଗୁଡ଼ିକ କିଏ ଗଣିପାରିବ । କେତେ ରକମର ଯନ୍ତ୍ରପାତି, କେତେ କ୍ରେନ୍, ବଏଲର, ଚୁଲ୍ଲୀ, ରେଲ୍‌ଲାଇନ—ଏମିତିକି ଲୁହାରେ ତିଆରି ଗ୍ରେଟ ଗ୍ରେଟ ଘର ମଧ୍ୟ ଟମ୍ପା ବନ୍ଦରରେ ହାଜର ହେଲା । ଟମ୍ପା ଠାରୁ ପନ୍ଦର ମାଇଲ ଦୂରରେ ଷ୍ଟୋନହିଲ । ବର୍ବିକେନ ଦୁଇ ଦିନ ଭିତରେ ଏଇ ପନ୍ଦର ମାଇଲ ରାସ୍ତାରେ ରେଲ୍‌ଲାଇନ ବସାଇଥିଲେ ।

ବର୍ବିକେନ ଯେମିତି ଏକରୁ ହଜାର ହୋଇଗଲେ । ଯେଉଁଠି

ସାମାନ୍ୟତମ ଅସୁବିଧା, ସେଠି ବର୍ବିକେନ ; ଯେଉଁଠି କାମ ବେଶୀ ଆଗଉ ନାହିଁ ସେଠି ବର୍ବିକେନ, ଯେଉଁଠି ଶ୍ରମିକମାନଙ୍କ ମଧ୍ୟରେ ସାମାନ୍ୟ ଅସନ୍ତୋଷ ସେଠି ବର୍ବିକେନ । ଗୋଟିଏ କଥାରେ ଯେଉଁଠିକୁ ଯାଆନ୍ତୁନା କାହିଁକି ସେଠି ବର୍ବିକେନଙ୍କୁ ଦେଖିବାକୁ ମିଳିବ । ତାଙ୍କ ନିକଟରେ କୌଣସି ବାଧା ଆଉ ବାଧା ହୋଇ ରହୁନି ନାହିଁ । କେଉଁଠି ହୁଏତ ସେ ନିଜେ ମାଟି ହାଣୁଛନ୍ତି, କେଉଁଠି ତାଙ୍କୁ ନିଜ ହାତରେ କାଠ ହାଣିବାର ଦେଖାଗଲା, ପୁଣି କେଉଁଠି ହୁଏତ ନିଜେ ସେ ମେସିନ୍ ଚଳାଉଛନ୍ତି । ଶ୍ରମିକମାନେ ଏସବୁ ଦେଖି ନୂତନ ଉତ୍ସାହ ଓ ଉତ୍ତେଜନାରେ କାମ କରିବାକୁ ଲାଗିଲେ ।

ନଭେମ୍ବର ପହିଲାରେ ବର୍ବିକେନ ଟମ୍ପାରୁ ଷ୍ଟୋନହିଲ ଆସି ଦେଖିଲେ ଯେ କିଛିଦିନ ଭିତରେ ଧାଡ଼ି ଧାଡ଼ି ହୋଇ ଘରଦ୍ୱାର ତିଆରି ହୋଇ ଗଲାଣି । ଘରେ ଘରେ କୁଲି-ମଜୁରିଆ, ସ୍ଥପତି, ଯନ୍ତ୍ରୀ, କମାର ବାସ କରୁଛନ୍ତି । କାଠ ପାଚେରୀ ଦ୍ୱାରା ସେହି ନବନିର୍ମିତ ସହରକୁ ସୁରକ୍ଷିତ କରା ହୋଇଛି । ବୈଦ୍ୟୁତିକ ଆଲୋକ ସରବରାହ ପାଇଁ କାରଖାନା ବସିଛି । ବର୍ବିକେନ ସେଇଦିନ ଶ୍ରମିକମାନଙ୍କର ଗୋଟିଏ ସଭା ଡାକିଲେ, ସଭାରେ ସେ ସମସ୍ତ କର୍ମୀମାନଙ୍କ ଉଦ୍ଦେଶ୍ୟରେ କହିଲେ, 'ବନ୍ଧୁଗଣ, ତୁମେମାନେ ନିଶ୍ଚୟ ଶୁଣିଛ ଯେ ଆମେମାନେ ନ'ଶ ଫୁଟ ଲମ୍ବର ଗୋଟାଏ କମାଣ ତିଆରି କରି ଠିକ ସିଧାକରି ମାଟି ଉପରେ ବସାଇବାକୁ ଚାହୁଁ । କୋଡ଼ିଏ ଫୁଟ ଉଚ୍ଚର ପାଚେରୀ ଦ୍ୱାରା କମାଣଟି ଘେରା ହେବ । ତେଣୁ ଷାଠିଏ ଫୁଟ ଚଉଡ଼ା ଓ ନ'ଶ ଫୁଟ ଲମ୍ବ ଗୋଟିଏ ଖାତ ଆମକୁ ଖୋଳିବାକୁ ହେବ । ଏତେବଡ଼ କାମଟା ଯଦି ଠିକ୍ ସମୟରେ ଭଲ ଭାବରେ କରାଯାଇ ପାରିବ, ତାହେଲେ ଆମର ସମସ୍ତ ଅର୍ଥବ୍ୟୟ ଏବଂ ପରିଶ୍ରମ ସାର୍ଥକ ହେବ ।

ଯଦି ଦିନକୁ ଦଶହଜାର ଘନଫୁଟ ମାଟି କଟାଯାଏ, ତାହେଲେ କାମଟା ଠିକ୍ ସମୟରେ ଶେଷ ହୋଇ ପାରିବ । ଆମେମାନେ ତୁମମାନଙ୍କ ଅଧ୍ୟବସାୟ ଓ କର୍ମକ୍ଷମତା ଉପରେ ନିର୍ଭର କରିଛୁ । ଇଂଜିନିୟର ମାର୍ଟିସନ ଯେଉଁ ପରିକଳ୍ପନା ଅନୁସାରେ କାମ କରିବାକୁ କହିବେ, ତୁମେମାନେ ଯଦି ଦ୍ୱିରୁକ୍ତି ନକରି ଧୀରସ୍ଥିର ଭାବରେ ସେଇ କାମ କରିଯିବ ତାହେଲେ ଆମର ଏଇ ବିରାଟ ପରିକଳ୍ପନା ସାର୍ଥକ ହେବ ଏବଂ ଚନ୍ଦ୍ରଲୋକ ଅଭିମୁଖରେ ପୃଥିବୀର ପ୍ରଥମ ଅଭିଯାନର ଇତିହାସରେ ତୁମମାନଙ୍କର ନାମ ମଧ୍ୟ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।’

ଶ୍ରମିକମାନେ ପ୍ରାଣପଣେ କାମ କରିବାକୁ ଲାଗିଲେ । ଓ କାଠର ଗୋଟାଏ ଖୁବ୍ ଟାଣୁଆ ଓ ବଡ଼ ଚକା ଉପରେ ପଥରର ପାଚେରିଟା ଗଢାହେଲା । ମାଟି କଟାହେବା ସାଙ୍ଗେ ସାଙ୍ଗେ ସେଇ ଚକା ତଳକୁ ତଳକୁ ଖସିବାକୁ ଲାଗିଲା । ଏଇ ସାଂଘାତିକ ମାରାତ୍ମକ କାମରେ ଦ’ ଗ୍ଟରଜଣ ମାରାତ୍ମକ ଭାବରେ ଆହତ ହେବାକୁ ଲାଗିଲେ, କେହି କେହି ବା ପ୍ରାଣ ହରାଇଲେ । କିନ୍ତୁ ତଥାପି କେହି ହତୋତ୍ସାହ ହେଲେନି । ଦିନ ରାତି ସମାନ ଗତିରେ କାମ ଗ୍ଟଲିଲା । ଦିନ ରାତି କଳକବ୍‌ଜା ଗ୍ଟଲିବା ଶବ୍ଦ ଶୁଭିଲା, ସବୁ ସମୟରେ ଇଂଜିନ୍‌ର ଗର୍ଜ୍ଜନ ମଧ୍ୟ । ସୁପଟୁ ଓ ସବଳ ହଜାର ହଜାର ହାତ ଏମ.ଗତ ଭାବରେ ବ୍ୟସ୍ତ ରହିଲା ସବୁବେଳେ ।

ଛଅମାସ ମଧ୍ୟରେ ପାଞ୍ଚଶଫୁଟ ଗଭୀର ଖାଲ ଖୋଳା ହୋଇ ଗଲା । ଜୁନମାସ ଦଶ ତାରିଖରେ କୂପଟିର ଗଭୀରତା ନ’ଶଫୁଟ ହେଲା । ସେଦିନ ଗନକ୍ଲବର ସଦସ୍ୟମାନଙ୍କର ଆନନ୍ଦ ଆଉ ଦେଖେ କିଏ ! ଏଇ ନ’ଶଫୁଟ ଗଭୀର ଖାଲକୁ କେନ୍ଦ୍ରକରି ଛ’ଶଗଜ ଦୂରରେ ବାରଶ’ ବଡ଼ ବଡ ଚୁଲ୍ଲୀ ତିଆରି ହୋଇଥିଲା । ଗୋଲ୍ଡ଼

ହିଂକମ୍ପାନୀ କମାଣ ତିଆରି କରିବାର ସ୍ଥିରକଲେ । ଅଠଷଠୀ ଖଣ୍ଡ ଜାହାଜ ବୋଝାଇ କରି ସେମାନେ କମାଣ ତିଆରି କରିବା ପାଇଁ କେବଳ ସତର ଲକ୍ଷ ମହଣ ଲୁହା ଅ.ଣିଲେ । କମ୍ପାନୀ ନିଜର ବଡ଼ ବଡ଼ ଚୁଲ୍ଲୀରେ ଏଇ ଲୁହାକୁ ପ୍ରଥମେ ତରଳାଇ କୋଇଲା ଓ ବାଲି ମଧ୍ୟରେ ଢାଳିଥିଲେ । କିନ୍ତୁ ପୁରାପୁରି ସ୍ଥିତରେ କାମରେ ଲଗାଇବା ପାଇଁ ଏଇ ଲୁହାକୁ ପୁଣି ତରଳାଇବା ଦରକାର ପଡ଼ିଥିଲା । ସେଇ ତରଳ ଲୁହାର ସ୍ରୋତକୁ କଡାଇରୁ ଗୋଟିଏ ସୁଡ଼ଙ୍ଗ ମଧ୍ୟଦେଇ ବାହାର କରି ନେଇ ବାରଶ'ନଳୀର ଏଇ ନ'ଶଫୁଟ ଗଭୀର ଖାଲକୁ ନେଇ ଯିବାର ବ୍ୟବସ୍ଥା କରା ହୋଇ ଥିଲା ।

ଯେଉଁଦିନ ଖାତ ଖୋଳା ଶେଷ ହେଲା, ତା'ପରଦିନ ବର୍ବିକେନ ସିମେଣ୍ଟ ନେଇ ଖାତର ଠିକ୍ ମଝିରେ ନ'ଫୁଟ ଲମ୍ବା କମାଣର ନଳୀ ତିଆରି କରିବା ଆରମ୍ଭ କରି ଦେଲେ । ଏଇ ନଳୀ ଓ ପଥର ପାଚେରି ମଝିର ଯେଉଁ ଫାଙ୍କା ଜାଗା ଥିଲା, ତାରି ଭିତରେ ତରଳ ଲୁହା ଢାଳି କମାଣ ତିଆରି କରିବାର ବନ୍ଦୋବସ୍ତ ହେଲା ।

ଲୁହା ଢାଳିବା ଦିନ ସକାଳୁ ଯେମିତି ଅଗ୍ନିକାଣ୍ଡ ଲାଗିଗଲା । ଦାଉ ଦାଉ କରି ଜଳୁଛି ବାରଶ' ଚୁଲ୍ଲୀ, ନିଆଁ ର ଲକଲକ ଜିହ୍ୱା ଯେମିତି ଆକାଶ ଛୁଇଁବା ପାଇଁ ନାଚ ଆରମ୍ଭ କରି ଦେଇଛି, ଚିମିଣି ମୁହଁ ଦେଇ ହୁ ହୁ କରି ଧୂଆଁ ବାହାରି ଆକାଶ ଢାଙ୍କି ଦେଉଛି । ନିଆଁ ଜଳିବାର ସୁ ସୁ ଶବ୍ଦ ଶୁଭୁଛି । ଠିକ୍ ହେଲା ଯେ ଗୋଟାଏ କମାଣରୁ ତୋପ ଦାଗିବା କ୍ଷଣି ସବୁଗୁଡ଼ିକ କଡାରୁ ଏକାସାଙ୍ଗରେ ତରଳ ଲୁହାର ବନ୍ୟା ଛୁଟିଆସିବ ଖାତ ଭିତରକୁ ।

ସମସ୍ତ ଦିନ ବାରଟା । ଗନକ୍ଲବର ସଭାପତି ଇମ୍ପେ ବର୍ବିକେନ ଗୋଟିଏ ଟେକ୍ଟ ମୁଣ୍ଡିଆ ଉପରେ ଛିଡ଼ା ହୋଇଛନ୍ତି ।

ଢଂ ଢଂ କରି ବାରଟା ବାଜିବାର ଶେଷ ଘଣ୍ଟାଟି ବାଜିବା ମାତ୍ରେ ତୋପ ଦଗାହେଲା । ତୋପ ଫୁଟିବାର ଶବ୍ଦ ମିଳାଇ ଯିବାର ଆଗରୁ ବାରୁଣ ଯିପାର ରନ୍ଧ୍ର ପଥ ଦେଇ ଅଗ୍ନିର ସାପ ଫଣା ଟେକି ଛୁଟି ଆସିଲା । ତରଳ ଅଗ୍ନିର ବନ୍ୟା ଛୁଟିଲା ଖାତକୁ ଝଡ଼ର ସମୁଦ୍ର ପରି । ଅଗ୍ନିର ଆନ୍ଦୋଳିତ ତାର ଢେଉ । ସେଇ ତରଳ ଲୁହା ହୁ ହୁ କରି ଖାତ ମଧ୍ୟକୁ ଗଡ଼ି ଆସିବାକୁ ଲଗିଲା, ପୁଞ୍ଜା ପୁଞ୍ଜା ଅଗ୍ନିକଣିକା ଦଳବାନ୍ଧି ଆକାଶରେ ଉଡ଼ିଲା । ଜଣାପଡ଼ିଲା ଯେତେ ଯେମିତି ଆଗ୍ନେୟଗିରି ବସୁନ୍ଧରାର ବହୁ ଶତାବ୍ଦୀ ପରେ ତାର ଶଯ୍ୟା ତ୍ୟାଗ କରି ଉଠିଛି ଓ ଖୋଲି ଦେଇଛି ତାର ଜ୍ୱାଳାମୁଖ । ସେଇ ତରଳ ଲୁହାର ପ୍ରବଳ ସ୍ରୋତରେ କମ୍ପି ଉଠିଲା ବସୁନ୍ଧରା, ଆରମ୍ଭ ହୋଇଗଲା ଯେମିତି ଭୂମିକମ୍ପ ।

ଲୁହା ଢଳା ହେବାର ସପ୍ତାହେ ପରେ ବି ଦେଖାଗଲା କମାଣର ନଳ ଦେଇ ବାହାରୁଛି ଅଗ୍ନିର ଲେଲିହାନ ଜିହ୍ୱା । ଆହୁରି ଗୋଟିଏ ସପ୍ତାହ ଅତିବାହିତ ହେଲା, କିନ୍ତୁ କମାଣ ନଳରୁ ଅଗ୍ନିବାଷ୍ପ ଉଦ୍‌ଗୀରଣର ବିରାମ ନାହିଁ । ଏକମାଇଲ ଭିତରକୁ ମଧ୍ୟ ଯିବାର ଉପାୟ ନାହିଁ । ଅଗ୍ନି ତା'ପରେ ଦେହ ପୋଡ଼ିଯାଏ । ଅଥଚ ନୂତନ କମାଣ ଦେଖିବାକୁ ସମସ୍ତେ ଉଦ୍‌ଗ୍ରୀବ ହୋଇ ରହିଛନ୍ତି । କମାଣଟି ଯଦି ଯତ ଯଦି ଠିକ୍ ଭାବରେ ତିଆରି ହୋଇ ନଥାଏ, ତେବେ ସମସ୍ତ ପରିକଳ୍ପନାଟି ବ୍ୟର୍ଥ ହୋଇଯିବ । କୋଡ଼ିଏ ବର୍ଷ ମଧ୍ୟରେ ତ ଚନ୍ଦ୍ର ଆଉ ପୃଥିବୀର ଏତେ ନିକଟକୁ ଆସିବ ନାହିଁ । ସମସ୍ତଙ୍କ ହୃତପିଣ୍ଡର ସ୍ପନ୍ଦନ ବଢିଗଲା, ଆଶା ଓ ନିରାଶାର ଘୂର୍ଣ୍ଣାବର୍ତ୍ତରେ । ସମସ୍ତେ କମାଣଟା ଦେଖିବାକୁ ବ୍ୟସ୍ତ ହୋଇ ପଡ଼ିଲେ । ବର୍ବିକେନ ବୋଧହୁଏ ବ୍ୟସ୍ତ ହୋଇଥିଲେ, କିନ୍ତୁ ତାଙ୍କ ମନୋଭାବ କେତେବେଳେ କେମିତି ଥାଏ ତାକୁ ବୁଝିବା ହୁଏତ ଈଶ୍ୱରଙ୍କର ମଧ୍ୟ ଅସାଧ୍ୟ । ମାଇକେଲ ଆର୍ଦାଁ ଜାଗାର

ମାଟି ଯେ ଏମିତି ତାତି ରହିଛି, ସେ କଥା କେହି ଜାଣି ପାରି ନ ଥିଲେ । କାହାରି କଥା ନମାନି ମ୍ୟାଟସନ ଥରେ କମାଣ ନିକଟକୁ ଯିବାକୁ ଚେଷ୍ଟା କରିଥିଲେ, କିନ୍ତୁ ଅଳ୍ପପରେ ତାଙ୍କର ରବର ଯୋତା ତରଳିଗଲା । ନିଆଁ ତେଜରେ ତାଙ୍କର ପାଦ ପ୍ରାୟ ପୋଡ଼ିଗଲା ପରି ହୋଇଗଲା, ମରୁ ମରୁ କୌଣସି ରକମ ପଳାଇ ଯାଇ ବଞ୍ଚିଗଲେ ସେ । ଷ୍ଟୋନିହିଲକୁ ଯିବାକୁ କାହାରିକୁ ହୁକୁମ ନଥିଲା । ବର୍ବିକେନଙ୍କ ହୁକୁମରେ ଷ୍ଟୋନିହିଲର ପ୍ରତ୍ୟେକ ଫାଟକରେ କଡ଼ା ପହରାର ବ୍ୟବସ୍ଥା ହୋଇଥିଲା ।

ଆଉ କେତେଦିନ ପରେ ବର୍ବିକେନ ମାତ୍ର କେତେ ଗଜ ଆଗେଇ ପାରିଲେ । ସେତେବେଳେ ବି ସେଠାକାର ମାଟି କାଂପୁଥିଲା, ଉଷ୍ମ ମାଟିରୁ ତପ୍ତ ବାଷ୍ପ ଉଠୁଥିଲା ଆଗଭଳି । ଶେଷରେ ଦୀର୍ଘ ପ୍ରତୀକ୍ଷା ପରେ ଅଗଷ୍ଟ ମାସର ଶେଷ ଆଡ଼କୁ ମାଟି ଥଣ୍ଡା ହେଲା । ଟିକେମାତ୍ର ସମୟ ନଷ୍ଟ ନକରି ବର୍ବିକେନ କାମ ଆରମ୍ଭ କରି ଦେଲେ । ସିମେଣ୍ଟର ଗୁଣ୍ଡିଟି ବି ଲୁହା ଭଳିଶକ୍ତ ହୋଇ ଯାଇଥିଲା । କ୍ରେନ ସାହାଯ୍ୟରେ କୌଣସିମତେ ତାକୁ ଉଠାଇ ନିଆଗଲା । ତାପରେ ଆସ୍ତେ ଆସ୍ତେ କମାଣର ଭିତର ମସୃଣ କରିବା କାମ ଆରମ୍ଭ ହେଲା ।

ଅବଶେଷରେ ସେପ୍ଟେମ୍ବର ବାଇଶି ତାରିଖରେ ଦେଖାଗଲା, କମାଣଟି ବ୍ୟବହାର ଉପଯୋଗୀ ହୋଇଛି । ତତ୍କ୍ଷଣାତ୍ ଖବରଟି ପୃଥିବୀସାରା ପ୍ରଚାର ହୋଇଗଲା । କ୍ୟାପ୍ଟେନ ନିକଲ୍ ମଧ୍ୟ ଅନ୍ୟ ସମସ୍ତଙ୍କ ସାଙ୍ଗରେ ଏ ଖବର ଶୁଣିଲେ । କହିବା ବାହୁଲ୍ୟ, ଦୁଇ ନମ୍ବର ବାଜି ହାରିଯାଇ ତାଙ୍କର ରାଗ ଆହୁରି ବଢିଗଲା ।

ପରଦିନ—ସେପ୍‌ଟେମ୍ବର ତେଇଶ ତାରିଖ । ଷ୍ଟୋନହିଲର ଫାଟକରୁ କଡ଼ା ପହରା ଅପସାରିତ ହେଲା । ଷ୍ଟୋନହିଲର ବନ୍ଦ ଫାଟକ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ହେଲା । ସାଙ୍ଗେ ସାଙ୍ଗେ ଏକ ପ୍ରବଳ ଜନସ୍ରୋତ ପ୍ରବେଶ କଲା ଭିତରକୁ । ବିସ୍ମିତ ଓ ବିସ୍ଫାରିତ ହଜାର ହଜାର ଆଖି ମାଟି ତଳେ ଗହ୍ୱର ଭିତରେ ନିର୍ମିତ ଏଇ କମାଣକୁ ଚାହିଁ ରହିଲେ । ସମସ୍ତେ ସମସ୍ୱରରେ କହି ଉଠିଲେ, 'ତାହେଲେ ସତକୁସତ ଚନ୍ଦ୍ର ଲୋକକୁ ଗୋଳା ପ୍ରେରଣ କରିବାର କମାଣ ତିଆରି ହୋଇ ଯାଇଛି ।'

ଗ୍ରେଟ ସହର ଟମ୍ପା । ତା'ରି ନିକଟରେ ଏତେବଡ଼ ଗୋଟାଏ ଜିନିଷ ହେଉଛି, ତେଣୁ ସହରକୁ ବହିରାଗତ ଲୋକର ସୁଅ ଛୁଟିଲା । ସହରରେ ସ୍ଥାନାଭାବ ଦେଖି ସହର କର୍ତ୍ତୃପକ୍ଷ ନିକଟବର୍ତ୍ତୀ ଗ୍ରାମ ଓ ବିସ୍ତୀର୍ଣ୍ଣ ପ୍ରାନ୍ତର ନେଇ ସହରର ଆୟତନ ବଢ଼ାଇଦେଲେ । ଟମ୍ପା ଆଉ ଗ୍ରେଟ ସହର ହୋଇ ରହିଲା ନାହିଁ ; ପ୍ରାୟ ନ୍ୟୁୟର୍କ ସାଙ୍ଗରେ ପ୍ରତିଯୋଗିତା କଲାଭଳି ଗୋଟିଏ ସହର ହୋଇ ଉଠିଲା । ଦି'ଦିନ ଭିତରେ ଟ୍ରାମ, ଗାଡ଼ି ଘୋଡ଼ା ଚାଲିଲା, ହଜାର ହଜାର ଦୋକାନ ବସିଲା । ଅଗଣିତ ସ୍କୁଲ ଖୋଲାହେଲା, କଲେଜ, ହସ୍‌ପିଟାଲ ଓ ପାଠଶାଳା ମଧ୍ୟ ଅଳ୍ପଦିନ ମଧ୍ୟରେ ଖୋଲା ଗଲା । ଅଲ୍ଲାଦିନର ମ୍ୟାଜିକ-ପ୍ରଦୀପର ମାୟାରେ ଯେମିତି ରାତାରାତି ଗୋଟିଏ ଆଧୁନିକ ବଡ଼ ସହର ହୋଇ ଉଠିଲା ଟମ୍ପା ।

ଦୁ'ଦିନ ଆଗରୁ ଯେଉଁ ସହର ଗୁଚ୍ଛ ଓ ନଗରୀ ଥିଲା, ବର୍ତ୍ତମାନ ସେଠି ସେମିତି ସମଗ୍ର ଯୁକ୍ତରାଷ୍ଟ୍ର ବସା ବାନ୍ଧିଲା । ଆମେରିକାନ ମାନେ କେବେକେବେ ଅଳସୁଆ ହୋଇ ବସି ରହିବା ଲୋକ ନୁହନ୍ତି, ଜାତ ସୌଦାଗର ସେମାନେ, ଚନ୍ଦ୍ରକୁ ଗୋଲା ନିକ୍ଷେପ ଦେଖିବାକୁ ଆସି ଟମ୍ପାରେ ବ୍ୟବସାୟ ଜମାଇ ବସିଗଲେ । କେତେକ ବଡ଼ ବଡ଼ ଗୋଦାମ ତିଆରି ହେଲା ମାଲ ରଖିବା ପାଇଁ, କେତେ ବାଣିଜ୍ୟ ବିଷୟକ ଖବର କାଗଜ ନୂତନ ପ୍ରତିଷ୍ଠିତ ଛାପାଖାନା ମାନଙ୍କରୁ ବାହାରିଲା । ସଂକ୍ଷେପରେ କହିଲେ, ଦୁ'ଦିନ ଆଗର ଶ୍ରେଷ୍ଠ ସହର ଟମ୍ପା ରାତାରାତି ଏମିତି ବଦଳିଗଲା ଯେ, ଯେଉଁମାନେ ଆଗରୁ ଟମ୍ପାକୁ ଦେଖିଥିଲେ, ସେମାନେ ଏଇ ନୂଆ ସହରକୁ ଆଶ୍ଚର୍ଯ୍ୟ ହୋଇ ଭାବିଲେ ଆମେ କଣ ରାତାରାତି ରିପଭ୍ୟାନ ଉଇଙ୍କଲ୍ ହୋଇଗଲୁ ନା କଣ, ନା ସେଇ ହଜାର ଏକ ଆରବ୍ୟ ରଜନୀର କୌଣସି ଗୋଟିଏ ରଜନୀରେ ପହଞ୍ଚିଗଲୁ ? ନିଜ ଆଖିକୁ ସେମାନେ ବିଶ୍ୱାସ କରି ନପାରି ଭାବନ୍ତି ଆମେ ସ୍ୱପ୍ନ ଦେଖୁନାହୁଁ ତ ? ପୁଣି ଥରେ ଭଲ ଭାବରେ ଆଖି ମଳି ପରିବର୍ତ୍ତିତ ଟମ୍ପାକୁ ଚାହାନ୍ତି । ନା, ଏଇ ସେଇ ଟମ୍ପା ।

ଯୁକ୍ତରାଷ୍ଟ୍ରର ଦକ୍ଷିଣାଞ୍ଚଳ ସହିତ ଟମ୍ପା'ର ଯୋଗାଯୋଗର ସୁବିଧା ପାଇଁ ନୂତନ ରେଳପଥଟିଏ ତିଆରି ହେଲା । ଯୁକ୍ତରାଷ୍ଟ୍ରର ସବୁ ଲୋକ ଦଳ ଦଳ ହୋଇ ପହଞ୍ଚିଲେ ଆସି ଷ୍ଟୋନହିଲରେ, ସେଇ କମାଣ ଦେଖିବାକୁ । ବାହାରୁ କମାଣର ଚେହେରା ଦେଖି କେହି କ୍ଷାନ୍ତ ହେଲେନି, ବରଂ ନ'ଶ ଫୁଟ ତଳକୁ ଖସି କମାଣର ଅନ୍ଧିସନ୍ଧି ସବୁ ଦେଖିବାକୁ ଲାଗିଲେ । ଲୋକମାନଙ୍କର ତଳକୁ ଓହ୍ଲାଇବାରେ ସୁବିଧା ପାଇଁ ବାର୍ବିକେନ ବଡ଼ ବଡ଼ କ୍ରେନ ଆଣି ସେଥିରେ ଗଦି ମୋଡ଼ା ଆସନ ସଂଯୋଗ କଲେ, ହଜାର ହଜାର ମର୍ଟିପ ଟିକେଟ୍ କରି ସେଇ ଆସନରେ ବସି ପାତାଳ ପୁରକୁ ଯାଇ କମାଣ ଦେଖିବାକୁ ଲାଗିଲେ । ପରେ ହିସାବ କରି ଦେଖା ଯାଇଥିଲା ଯେ,

ଟିକେଟ ବାବଦରେ ଗନକ୍ଲବ ଦୁଇ କୋଟି ଟଙ୍କା ଉପାର୍ଜନ କରିଛି ।

ଏଣେ ଗନକ୍ଲବର ସଦସ୍ୟମାନେ ମାଟିର ନ'ଶ ଫୁଟ ନିମ୍ନରେ କମାଣ ତଳେ ଗୋଟିଏ ବିରାଟ ଭୋଜି ସଭାର ଆୟୋଜନ କରିଥିଲେ । ବୈଦ୍ୟୁତିକ ଆଲୋକରେ ଅନ୍ଧକାର ପାତାଳପୁରୀ ଦିବାଲୋକ ପରି ସ୍ପଷ୍ଟ ଦେଖା ଯାଉଥିଲା । ଭୋଜି ସଭା ପରେ ସଦସ୍ୟମାନେ ଗନକ୍ଲବ ଓ ଯୁକ୍ତରାଷ୍ଟ୍ରର ଦୀର୍ଘ ଜୀବନ କାମନା କରି ଧ୍ୱନିମାନ କରିଥିଲେ ଏବଂ ସେମାନଙ୍କର ସେଇ ସମବେତ ଧ୍ୱନି ପାତାଳରୁ ନ'ଶ ଫୁଟ ଉପରକୁ ଉଠି ହଜାର କମାଣର ଗର୍ଜନ ପରି ଗୁଞ୍ଜରି ଆଉ୍ଡ଼େ ଖେଳି ଯାଉଥିଲା । ମାଟି ଉପରେ ହଜାର ହଜାର କଣ୍ଠରୁ ତାର ପ୍ରତ୍ୟୁତ୍ତର ଉଠିଲା, 'ଗନକ୍ଲବ ଦୀର୍ଘଜୀବୀ ହେଉ ! ଯୁକ୍ତରାଷ୍ଟ୍ର ଦୀର୍ଘଜୀବୀ ହେଉ ।'

ମ୍ୟାଷ୍ଟନ ଆନନ୍ଦରେ ଅସ୍ଥିର ହୋଇ କହିଲେ, 'ସାରା ପୃଥିବୀର ରାଜତ୍ୱ ପାଇଲେ ବି ମୁଁ ଏଠୁ ଉଠିବି ଯିବି ନାହିଁ । ବର୍ତ୍ତମାନ ଯଦି କିଏ ଏଇ ବିରାଟ କମାଣରେ ବାରୁଦ ପୂର୍ତ୍ତି କରି, ଗୋଳା ପୁରାଇ ଦିଏ, ତଥାପି ମୁଁ ଏଠି ରହିବି । ବରଂ ଧୂଳିରେ ମିଶିଯିବି ତଥାପି ଏଠୁ ପୁଞ୍ଜାଏ ବି ହଟିବି ନାହିଁ ।' ଟିକେ ଦମ ନେଇ ସେ ଗନକ୍ଲବ ନାମରେ 'ହୁର୍‌ରେ' ଦେଲେ, ଯାହାର ଜବାବ ଅନ୍ୟମାନେ ବି ସମବେତ କଣ୍ଠରେ ଦେଲେ ।

ପାତାଳର ଭୋଜି ସଭା ଶୁଭ୍ରି ବର୍ବିକେନ ଯେତେବେଳେ ବାହାରିଲେ, ତାଙ୍କର ଆନନ୍ଦୋଜ୍ଜ୍ୱଳ ଚକ୍ଷୁ ଚକ୍ ଚକ୍ କରୁଥିଲା । ଉପରକୁ ଉଠି ଦେଖିଲେ ତାଙ୍କ ନାମରେ ଗୋଟିଏ ଟେଲିଗ୍ରାମ ଆସିଛି । ଭାବିଲେ କେହି ହୁଏତ ତାଙ୍କୁ ଅଭିନନ୍ଦନ ଜଣାଇ ତାରବାର୍ତ୍ତା ପଠାଇଛି ।

ଲଫାପା ଖୋଲି ଟେଲିଗ୍ରାମଟା ପଢ଼ିବା ସଙ୍ଗେ ସଙ୍ଗେ ତାଙ୍କର

ଉଜ୍ଜ୍ୱଳ ମୁଖ ପାଣ୍ଡୁର ହୋଇଗଲା । ପ୍ରବଳ ଅଶ୍ରୁରେ ବ ତାଙ୍କ ମୁଖ ଝାଳେଇଗଲା । ରୁମାଲରେ ମୁହଁ ପୋଛି ଟେଲିଗ୍ରାମଟା ପୁଣି ଥରେ ପଢିଲେ ବର୍ବିକେନ, ତା'ପରେ ପୁଣି ଥରେ । କିନ୍ତୁ ଟେଲିଗ୍ରାମଟାର ସାର ମର୍ମ କିଛି ବୁଝି ପାରିଲେ ନାହିଁ । କ'ଣ ଲେଖା ହୋଇଛି ଏଥିରେ ? ଏକଥା କ'ଣ ସମ୍ଭବ ? ପୁଣି ଟେଲିଗ୍ରାମଟା ପଢିଲେ ସେ । ତଥାପି ଟେଲିଗ୍ରାମଟାର କିଛି ହେଲେ ତାଙ୍କର ବୋଧଗମ୍ୟ ହେଲା ନାହିଁ । କମ୍ପିତ ହାତରେ ଟେଲିଗ୍ରାମଟା ସେକ୍ରେଟାରୀ ମ୍ୟାକସନଙ୍କ ହାତରେ ଦେଇ କହିଲେ, 'ମୁଁ ଏହାର ଅର୍ଥ କିଛି ବୁଝି ପାରୁନି ମ୍ୟାକସନ । ଆପଣ ପଢି ଦେଖନ୍ତୁ ତ ।'

ମ୍ୟାକସନ ବିସ୍ମିତ ହୋଇ ଟେଲିଗ୍ରାମଟା ବର୍ବିକେନଙ୍କ ହାତରୁ ନେଇ ବଡ଼ ପାଟିରେ ପଢିଲେ—

ପ୍ୟାରୀସ
ଫ୍ରାନ୍ସ

ତିରିଶ ସେପ୍ଟେମ୍ବର, ଇମ୍ପେ ବର୍ବିକେନ, ଟମ୍ପା,
ଫ୍ଲୋରିଡ଼ା, ଯୁକ୍ତରାଷ୍ଟ୍ର, ଆମେରିକା

'ଆପଣ ଯେଉଁ ଗୋଳାଟା ଚନ୍ଦ୍ରକୁ ପଠାଇବା ପାଇଁ ତିଆରି କରୁଛନ୍ତି, ଦୟାକରି ସେଟାକୁ ଗୋଲ୍ ନକରି ଡମ୍ବାକୃତି କରନ୍ତୁ । ତା ଭିତରଟା ଫମ୍ପା କରିବେ । ମୁଁ ଏଇ ଗୋଳା ଭିତରେ ରହି ଚନ୍ଦ୍ରକୁ ଯିବି । ମୁଁ ଟମ୍ପାରେ ପହଁଚୁଛି । ଆଜି 'ଏସ୍. ଏସ୍. ଆଟଲାଣ୍ଟା' ଜାହାଜରେ ଲିଭରପୁଲ ଛାଡୁଛି—ମାଇକେଲ ଆର୍ଡା ।'

କ୍ଷଣକ ମଧ୍ୟରେ ଖବରଟା ଚାରିଆଡ଼େ ବ୍ୟାପିଗଲା । ଘରେ ଘରେ, ରାସ୍ତା-ଘାଟରେ, ଦୋକାନ-ବଜାରରେ, ଅଫିସ ରେସ୍ତୋ-ରାରେ, ଜାହାଜ ଘାଟରେ, ରେଲଷ୍ଟେସନରେ ସବୁଠାରେ ଗୋଟିଏ

କଥା 'ଚନ୍ଦ୍ରକୁ ମଣିଷ ଯାଉଛି ।' ଯେଉଁମାନେ ପୃଥିବୀର ଖବର ଅନ୍ତର ରଖନ୍ତି ନାହିଁ, ସେମାନେ ବେଶ୍ ଜୋରରେ କହୁଲେ ଯେ ମାଇକେଲ୍ ଆର୍ଦା ନାମରେ କେହି ଲୋକ ନାହିଁ, ଏଟା ଗୋଟାଏ ବିଶୁଦ୍ଧ କପୋଳ-କଳ୍ପିତ ନମୁନା । କିଏ ବା କହିଲା, ଏଟା ଫରାସୀମାନଙ୍କର ବାତୁଳତାର ଗୋଟାଏ ନଜିର । ପୃଥିବୀର ମଣିଷ ଚନ୍ଦ୍ରକୁ ଯିବ କପରି ? ପବନ ପାଇବ କେଉଁଠୁ, ନିଶ୍ୱାସ ନେବ ବା କପରି ? ବାରୁଦ ନିଆଁରେ ତାତି ଉଠିଥିବା ଗୋଲା ଭିତରେ ପୋଡ଼ି ପାଉଁଶ ହୋଇଯିବ । ଆଉ ଯଦିବା ଦୈବ କୃପାବଳରୁ ଚନ୍ଦ୍ରରେ ପହଞ୍ଚେ, ଫେରି ଆସିବ କପରି ? ଏସବୁ ଅସମ୍ଭବ । ଆଉ ଏପରି ସବୁ ଅଜବ କଳ୍ପନା ବିଳାସରେ ଫରାସୀମାନେ ଓସ୍ତାଦ୍ । ଏଟା ସେମାନଙ୍କ ଜାତିର ବୈଶିଷ୍ଟ୍ୟ ।

ତତ୍‌କ୍ଷଣାତ୍ ବର୍ବିକେନ ଲିଭରପୁଲ୍ ଜାହାଜ ଅଫିସକୁ ତାର କଲେ । ଘଣ୍ଟାକ ମଧ୍ୟରେ ଉତ୍ତର ଆସିଲା –'ଆଟଲାଣ୍ଟା ଜାହାଜ ଲିଭରପୁଲ୍ ବନ୍ଦର ଛାଡ଼ିଛି । ଟମ୍ପା ଉଦ୍ଦେଶ୍ୟରେ ଜାହାଜଟି ଯାତ୍ରା କରିଛି । ସେଇ ଜାହାଜର ଯାତ୍ରୀ ତାଲିକାରେ ବିଶ୍ୱବିଖ୍ୟାତ ଫରାସୀ ବୈଜ୍ଞାନିକ ମାଇକେଲ୍ ଅର୍ଦାଙ୍କର ନାମ ଅଛି । ବିଶ୍ୱସ୍ତ ସୂତ୍ରରୁ ଜଣାପଡ଼ିଛି ଯେ, ସେ ଏସ. ଏସ. ଆଟଲାଣ୍ଟାରେ ଟମ୍ପା ଯାଉଛନ୍ତି ।

ଖବର ପାଇ ବର୍ବିକେନଙ୍କର ଆଖି ଦୁଇଟି ଜଳି ଉଠିଲା, ଅସ୍ଥିର ହାତ ଦୁଇଟି ମୁଠା ହୋଇ ଆସିଲା । ବର୍ବିକେନ କୌଣସି ମତାମତ ପ୍ରକାଶ ନକରି, ଯେଉଁ କମ୍ପାନୀ ଗୋଲାଟା ତିଆରି କରିବାର ଭାର ନେଇଥିଲା ତାକୁ ଜଣାଇଲେ : 'ପରବର୍ତ୍ତୀ ଖବର ନ ପାଇବା ପର୍ଯ୍ୟନ୍ତ ଯେମିତି ଗୋଳା ତିଆରି କାମରେ ହାତ ଦିଆ ନହୁଏ ।'

ମାଇକେଲ୍ ଆର୍ଦାଙ୍କ ନାମ ଆମେରିକାର ସବୁ ଲୋକ ମୁଖରେ

ଶୁଣାଗଲା । କେହି କେହି କହିଲେ—ଶେଷକୁ ଏତେ ବଡ଼ ଜଣେ ବୈଜ୍ଞାନିକ କ'ଣ ପାଗଳ ହୋଇଗଲେ ! ଆହା ! ଅବଶ୍ୟ ପ୍ରତିଭାବାନ ବ୍ୟକ୍ତିମାନେ ଟିକେ ପାଗଳ ହୁଅନ୍ତି, ତା ବୋଲି ଏମିତି ନୁହେଁ ।' ବର୍ବିକେନ ଗୋଲା ତିଆରି କାମ ବନ୍ଦ ରଖିବାକୁ ଆଦେଶ ଦେଇଛନ୍ତି, ସେକଥା ଶୁଣି କେହି କେହି ମନ୍ତବ୍ୟ ଦେଲେ, 'ଶେଷକୁ ଧୀର ଗମ୍ଭୀର ବର୍ବିକେନ ମଧ୍ୟ ପାଗଳ ହୋଇଗଲେ ? ଚନ୍ଦ୍ରକୁ ମଣିଷ ଯିବ ! କି ଅସମ୍ଭବ କଥା ! ଏମିତିକା ଅଜବ ପରିକଳ୍ପନାରେ କାମ କଲେ ଆମେରିକାର ଗୋଳା କୌଣସିଦିନ ଚନ୍ଦ୍ରରେ ପହଞ୍ଚିବ ନାହିଁ ।'

ଦେଖୁ ଦେଖୁ ଟମ୍ପାର ଲୋକ ସଂଖ୍ୟା ଚତୁର୍ଗୁଣ ହୋଇଗଲା । ଅସଂଖ୍ୟ ଲୋକ ଜମାୟତ ହୋଇ ଯିବାରୁ ଟମ୍ପାରେ ଶତମତ ଖାଦ୍ୟ ସମସ୍ୟା ଦେଖାଦେଲା । ମାଇକେଲ ଆର୍ଦାଁ, ମାଇକେଲ ଆର୍ଦାଁ ! ମାଇକେଲ ଆର୍ଦାଁଙ୍କୁ ଚର୍ମ ଚକ୍ଷୁରେ ଦେଖିବା ପାଇଁ କଏ ଜାହାଜରେ, କଏ ରେଳରେ, କଏ ଘୋଡ଼ା ଗାଡ଼ିରେ ଟମ୍ପାକୁ ଛୁଟିବାକୁ ଲାଗିଲେ । ଲୋକଙ୍କ ଭିଡ଼ ଏତେ ବଢ଼ିଗଲା ଯେ ଗୋଟିଏ ଶୋଇସ ପକାଇବାର ଜାଗା ମଧ୍ୟ ରହିଲା ନାହିଁ ଟମ୍ପରେ ।

ରାସ୍ତାଘାଟରେ, ହାଟ ବଜାରରେ ସବୁଠି କେବଳ ଗୋଟିଏ କଥା—'ମାଇକେଲ ଆର୍ଦାଁ କେବେ ଆସୁଛନ୍ତି ? ଜାହାଜ ଅଫିସର ଲୋକମାନେ 'ଏସ. ଏସ. ଆଟଲାଣ୍ଟା' କେବେ ଆସୁଛି କହି କହି ଏକାବେଳେ ପାଗଳ ହୋଇଗଲେ । ଗୋଟିଏ ଚତୁର ଖବର କାଗଜ 'ଏସ. ଏସ. ଆଟଲାଣ୍ଟା' କେବେ ଆସିବ ସେଇ ତାରିଖ ପ୍ରକାଶ କରି ଅନ୍ୟ କାଗଜଗୁଡ଼ିକୁ ପଛକୁ ପକାଇ ଅନେକ ଲାଭ କରିଗଲା । ଶେଷରେ ଟମ୍ପାର ଜନସମାବେଶ ଏମିତି ପ୍ରଚଣ୍ଡ ହୋଇ ଉଠିଲା ଯେ, କର୍ତ୍ତୃପକ୍ଷ ଶାନ୍ତି ରକ୍ଷା କରିବାକୁ ଯାଇ ଗଳଦ୍‌ଘର୍ମ ହୋଇଗଲେ ।

ଅକଟୋବରର କୋଡ଼ିଏ ତାରିଖ ସକାଳେ ଦୂର ଦିଗ୍‌ବଳୟରେ 'ଆଟଲାଣ୍ଟା' ଚିମିନିର ଧୂଆଁ ଦେଖାଗଲା । ହଜାର ହଜାର ଲୋକ ଦୂରବୀକ୍ଷଣର କାଚରେ ଆଖି ରଖି ଉଦ୍‌ଗ୍ରୀବ ହୋଇ ରହିଲେ । ସମୁଦ୍ର ତୀରରେ ନିବିଡ଼ ଅରଣ୍ୟ ପରି ଜନସମାବେଶ ହୋଇଥିଲା ବୋଲି ପାଟିଗୋଳ ଖୁବ୍ କମ୍ ହେଉ ନଥିଲା ।

ପ୍ରତି ମୁହୂର୍ତ୍ତ ଯେମିତି ଗୋଟିଏ ଗୋଟିଏ ବର୍ଷ ; ସମୟ ଯେମିତି ଆଉ କୌଣସି ମତେ କଟୁନ । କେତେବେଳେ ଜାହାଜ ଆସିବ କେତେବେଳେ ମାଇକେଲ ଆର୍ଦାଁଙ୍କୁ ଦେଖାଯିବ—ଏଇ ଉତ୍କଣ୍ଠାରେ ସମସ୍ତେ ଉଦ୍‌ଗ୍ରୀବ ହୋଇ ରହିଲେ । ଏକ ସମୟରେ ଅବଶ୍ୟ ଦର୍ଶକଙ୍କର ଚିତ୍କାର ଓ ହଟ୍ଟଗୋଳ ମଧ୍ୟରେ ଏଇ ପ୍ରତୀକ୍ଷାର ଅବସାନ ହେଲା । 'ଏସ. ଏସ. ଆଟଲାଣ୍ଟା' ଜେଟିରେ ଭିଡ଼ିବା ସଙ୍ଗେ ସଙ୍ଗେ ଛୋଟ ବଡ଼ ଅନେକଗୁଡ଼ିଏ ନୌକା ଜାହାଜକୁ ଘେରିଗଲେ । ସେଇ ଭିଡ଼ ମଧ୍ୟରେ ଅନେକ କଷ୍ଟ କରି ଗନକ୍ଲବର ସଭାପତି ବାର୍ବିକେନ ସମସ୍ତଙ୍କ ଆଗରୁ ଜାହାଜ ଉପରକୁ ଉଠି ଯାତ୍ରୀମାନଙ୍କୁ ବୁଝି ପଚାରିଲେ 'ମାଇକେଲ ଆର୍ଦାଁ ?'

ଜନୈକ ଯାତ୍ରୀ ଆଗେଇ ଆସି କହିଲେ, 'ମୁଁ ଏଇଠି ଅଛି ।'

ଗନକ୍ଲବର ସଭ୍ୟପଣ ଭିତ୍ରେ ବର୍ବିକେନ ସବୁ ସମୟରେ ଅବିଚଳିତ, ଧୀର ସ୍ଥିର ଓ ଦୃଢ଼ ସ୍ୱଭାବର । କନ୍ତୁ ଏଇ ବିଶେଷ କ୍ଷେତ୍ରରେ ତାଙ୍କର ଅନେକ ଦିନର ସୁନାମ ସେ ହରାଇଲେ । ରୁଦ୍ଧ ନିଶ୍ୱାସରେ ହତବାକ୍ ବର୍ବିକେନ ସବିସ୍ମୟରେ ମାଇକେଲ୍ ଆର୍ଦାଙ୍କ ଆପାଦ ମସ୍ତକ ନିରୀକ୍ଷଣ କରିବାକୁ ଲାଗିଲେ ।

ମାଇକେଲ ଅର୍ଦା ? ଏଇ କ'ଣ ସେହି ବିଶ୍ୱବିଖ୍ୟାତ ଦୁଃସାହସୀ ଫରାସୀ ବୈଜ୍ଞାନିକ ? ଅର୍ଦାଙ୍କର ବୟସ ଚାଳିଶ ପାଖାପାଖି, ଦୀର୍ଘ ସୁଠାମ ଶରୀର, ସୁପ୍ରଶସ୍ତ ଲଲାଟ, ଶରୀର ତୁଳନାରେ ମୁଣ୍ଡଟି ସାମାନ୍ୟ ବଡ଼ । ମୁଣ୍ଡର ଧୂସର କେଶଗୁଚ୍ଛ ସମୁଦ୍ର ପବନରେ ଫୁରୁ ଫୁରୁ ହୋଇ ଉଡ଼ୁଛି । ଶିକାରୀ ବିଲେଇ ପରି ମର୍ଯ୍ୟଦିବଡ଼ ନିଶ, ତୀକ୍ଷ୍ଣ ନାକ, ଆଖି ଦୁଇଟି ବୁଦ୍ଧିର ଦୀପ୍ତିରେ ଝଲସି ଉଠୁଛି । ସବଳ ଦୁଇଟି ବାହୁ, ପୌରୁଷ ମଣ୍ଡିତ ପଦକ୍ଷେପ, ସୁବିନ୍ୟସ୍ତ ପୋଷାକ । ମଣିଷଟିକୁ ଦେଖିଲେ ମନେ ହେବ ସତେ ଯେମିତି ଏକ ଜୀବନ୍ତ ପ୍ରଶ୍ନର ସମ୍ମୁଖୀନ ହେଲି । ଯାଙ୍କର ନାମ ମାଇକେଲ୍ ଅର୍ଦା ? ସାମ୍ବାଦିକମାନଙ୍କର କ୍ୟାମେରାରେ ଏକ ସାଙ୍ଗରେ 'କ୍ଲିକ୍' କରି ଆବାଜ୍ ହେଲା । ମାଇକେଲ୍ ଆର୍ଦାହିଁ ଆଜି ସମ୍ବାଦ ପତ୍ରର ପ୍ରଥମ ପୃଷ୍ଠାର ଶିରୋନାମା ।

ଫ୍ରାନ୍ସର ବୈଜ୍ଞାନିକ ମାଇକେଲ୍ ଆର୍ଦାଙ୍କ ନାମ ୟୁରୋପ ଓ ଆମେରିକାରେ ନ ଜାଣେ କିଏ ? ସମଗ୍ର ପାଶ୍ଚାତ୍ୟ ଦେଶ ଜାଣେ, ଶିଶୁପରି ସରଳ ଯେଉଁ ବୈଜ୍ଞାନିକ, ତାଙ୍କର ହୃଦୟରେ ନାନା ଧରଣର ଦୁଃସାହସିକ କାର୍ଯ୍ୟ କରିବାର ସ୍ପୃହା ଅନିର୍ବାଣ ଅଗ୍ନିଶିଖା

ପରି ଦାନ୍ତ ଦାଉ଼ ହୋଇ ନଜୁଥାଏ । ନବୁଡ଼ମ୍ବର ଏଇ ବିଜ୍ଞାନ ସାଧକଙ୍କର ପ୍ରଚେଷ୍ଟାରେ ଆଧୁନିକ ବିଜ୍ଞାନର ଅଗ୍ରଗତି କେତେଦୂର ହୋଇଛି, ତାହା କଣ କାହାରି ଏତେଦିନ ପର୍ଯ୍ୟନ୍ତ ଆଉ ଜାଣିବାକୁ ବାକୀ ଅଛି ? ନେପୋଲିୟନଙ୍କ ପରି ସେ ମଧ କହନ୍ତି, 'ଅସମ୍ଭବ' ଏଇ ଶବ୍ଦଟା କେବଳ ମାତ୍ର ମୂର୍ଖମାନଙ୍କ ଅଭିଧାନରେ ଅଛି । ସେ କହୁଥିଲେ ଲୋକମାନେ ଯାହାକୁ ଅସମ୍ଭବ ବୋଲି ଭାବନ୍ତି, ଏକାଗ୍ର ହୋଇ ଟିକେ ବୁଦ୍ଧି ଖର୍ଚ୍ଚ କଲେ ତାହା ପୃଥିବୀରେ ସମ୍ଭବ ହୋଇ ଉଠେ । ହ୍ୟାନିବଲଙ୍କ ପରି ସେ ମଧ କହୁଥିଲେ, ଆଲପ୍ସ ପର୍ବତ ଶ୍ରେଣୀ ମଧ୍ୟ ମଥାନତ କରି ମୋର ପଥରୁ ଅପସରି ଯିବ ।

ସଂକ୍ଷେପରେ ଏଇ ହେଲା ମାଇକେଲ ଅର୍ଦ୍ଦାଙ୍କର ପରିଚୟ ।

ବର୍ବିକେନ ଏତେ ସମୟ ଧରି ଅନ୍ୟ ସବୁ ଭୁଲିଯାଇ କେବଳ ଏଇ ଅଦ୍ଭୁତ ବୈଜ୍ଞାନିକଙ୍କୁ ଦେଖୁଥିଲେ । ସହସା ଯେତେବେଳେ ହଜାର ହଜାର ଲୋକ ମାଇକେଲ ଅର୍ଦ୍ଦାଙ୍କର ଦୀର୍ଘଜୀବନ କାମନା କରି ସ୍ୱର ଉତ୍ତୋଳନ କଲେ ସେତେବେଳେ ତାଙ୍କର ଚମକ ଭାଙ୍ଗିଲା । ଇମ୍ପେ ବର୍ବିକେନ ଦେଖିଲେ ଜାହାଜର ଏଣ୍ଡ଼େ ଟିକେ ଶ୍ରେଷ୍ଠ ତେକରେ ଲୋକ ଭର୍ତ୍ତି । ଲୋକ ଭର୍ତ୍ତି ଯୋଗୁ 'ଏସ୍. ଏସ୍. ଆଟଲଣ୍ଟା'ର ଅବସ୍ଥା ଶୋଚନୀୟ ; ପାଣିରେ ବୁଡ଼ିଯିବା ସଙ୍ଗେ ସମାନ । ବର୍ବିକେନ ଦେଖିଲେ ମାଇକେଲ ଅର୍ଦ୍ଦାଙ୍କ ସାଙ୍ଗରେ କରମର୍ଦ୍ଦନ କରିବା ପାଇଁ ଠେଲା ଠେଲି ଲାଗି ଯାଇଛି । କରମର୍ଦ୍ଦନ କରି କରି ଭଦ୍ରଲୋକ ପ୍ରାୟ ଶ୍ରାନ୍ତ ହୋଇ ପଡ଼ିଲେଣି, ତଥାପି ଉତ୍ସାହୀ ଜନତାର ଅନ୍ତ ନାହିଁ । ଶେଷପର୍ଯ୍ୟନ୍ତ ଭଦ୍ରଲୋକ ଜନସାଧାରଣଙ୍କର ଢଙ୍ଗଢାଙ୍ଗ ଦେଖି, ପ୍ରଶଂସା ଦାଉରୁ ନିଜକୁ ରକ୍ଷା କରିବାକୁ ଯାଇ ନିଜ କ୍ୟାବିନ ଭିତରକୁ ଖସିଗଲେ । ଚମ୍ବୁକ ପଛରେ ଲୁହା ଛୁଟିଲା ପରି ବର୍ବିକେନ ନୀରବରେ ତାଙ୍କ ପଛେ ପଛେ ଯାଇ କ୍ୟାବିନ ଭିତରେ ପଶିଲେ ।

ଷ୍ୟାବନ୍‌ରେ ଯନ୍ତ୍ରଣ୍ଟ ଡ଼କଳଣ ଦ୍ଭିକଣଙ୍କ କିଛି ସମୟ ସ୍ଥିର ରହିଲେ ନୀରବରେ । ସମ୍ଭବତ ନୂଭନତ ବର୍ଣିକେନ କହିଲେ, 'ମସିଁୟେ ଆର୍ଦଁ, ଆପଣ କଣ ସତରେ ତାହେଲେ ଚନ୍ଦ୍ରକୁ ଯିବାକୁ ସିଦ୍ଧାନ୍ତ କରିଛନ୍ତି ?'

ଗମ୍ଭୀର ସ୍ୱରରେ ଉତ୍ତର ମିଳିଲା 'ନିଶ୍ଚୟ' ।

'କୌଣସି ପ୍ରକାର ଆପଣ ଏ ସଙ୍କଳ୍ପ ପରିତ୍ୟାଗ କରିବେ ନାହିଁ ?'

'ନାଁ,' ଧୀର ଭାବରେ ମାଇକେଲ ଆର୍ଦଁ । କହିଲେ, 'ନା କେବେ ନୁହଁ । କୌଣସିମତେ ମୁଁ ସଙ୍କଳ୍ପରୁ ବିଚ୍ୟୁତ ହେବିନାହିଁ ।

'ଆପଣଙ୍କର ଏଇ ସଙ୍କଳ୍ପ କେତେଦୂର ମାରାତ୍ମକ ହୋଇ ପାରେ ତାହା କ'ଣ ଆପଣ ଭାବି ଦେଖିଛନ୍ତି ?'

'ଏଥିରେ ପୁଣି ଭାବିବାର କ'ଣ ଅଛି ? ମାଇକେଲ ଆର୍ଦଁ । ଗମ୍ଭୀର କଣ୍ଠରେ କହିଲେ, 'ଭାବିବ ପୁଣି କ'ଣ ? ଏଭଳି ଗୋଟିଏ ସହଜ ଓ ସାଧାରଣ ବିଷୟରେ ଅଯଥା ଭାବି ନଷ୍ଟ କରିବା ଭଳି ସମୟ ମୋ ର ନାହିଁ । ଯେମିତି ଶୁଣିଲି ଆପଣମାନେ ଚନ୍ଦ୍ରଲୋକ ଅଭିମୁଖରେ ଗୋଟିଏ ଗୋଳା ପଠାଉଛନ୍ତି, ମୋର ସେତେବେଳେ ମନେ ହେଲା ଏଇ ସୁଯୋଗରେ ଚନ୍ଦ୍ରଲୋକରୁ ଥରେ ଘୂରି ଆସିଲେ ମନ୍ଦ ହୁଅନ୍ତାନି, ଏଟା ଏମିତି କ ସାଂଘାତିକ ବ୍ୟାପାର ଯେ ଏଥିପାଇଁ ଚିନ୍ତାରେ ମୁଣ୍ଡ ଖେଳାଇବାକୁ ହେବ ? ଯିବି ବୋଲି ଯେତେବେଳେ ମୁଁ ସିଦ୍ଧାନ୍ତ ଗ୍ରହଣ କରିଛି, ଯେମିତି ହେଲେ ମୁଁ ଯିବି ଆପଣ ଏକଥା ନିଶ୍ଚିତ ଭାବରେ ଜାଣି ରଖନ୍ତୁ ।'

'ହୁଁ' ! ତାହେଲେ ଚନ୍ଦ୍ରଲୋକକୁ କେଉଁଥିରେ ଓ କେମିତି ଉପାୟରେ ଯିବେ କିଛି ସ୍ଥିର କରିଛନ୍ତି ? ସେଇ ଉପାୟଟି ମୁଁ ଜାଣି ପାରିବିକି ।'

'ହଁ ଉପାୟ ଗୋଟାଏ ଅବଶ୍ୟ ସ୍ଥିର କରିଛି । ସେସବୁ ଚିନ୍ତା

ନକର ମୁଁ ତ ଗୋଟାଏ ପାଗଳଭଳି ଏ ସିଦ୍ଧାନ୍ତ ନେଇନ ! ତେବେ, ଗୋଟି ଗୋଟି କରି ସମସ୍ତଙ୍କୁ କହିବୁଲିବାକୁ ସମୟ ମୋର ନାହିଁ, ତାଛଡ଼ା ସେଟା ଗୋଟାଏ ଲୋଭନୀୟ ବ୍ୟାପାର ମଧ୍ୟ ନୁହେଁ । ଆପଣ ବରଂ କାଲି ଗୋଟାଏ ଜନସଭା ଡାକନ୍ତୁ । ଆପଣଙ୍କର ଯଦି ଇଚ୍ଛା ହୁଏ, ତାହେଲେ ସମଗ୍ର ଯୁକ୍ତରାଷ୍ଟ୍ର କାହିଁକି ସମଗ୍ର ପୃଥିବୀକୁ ଆମନ୍ତ୍ରଣ ଜଣାଇ ପାରନ୍ତି, ମୋର ସେଥିରେ କୌଣସି ପ୍ରକାର ଆପତ୍ତି ନାହିଁ । ମୋର ଯାହା କିଛି କହିବାର ମୁଁ ସେଇ ସଭାରେ କହିବି, ମିଷ୍ଟର ବର୍ବିକେନ୍ । କୁହନ୍ତୁ, ଆପଣ ଏ ପ୍ରସ୍ତାବରେ ରାଜି ଅଛନ୍ତି ତ ?'

ଯନ୍ତ୍ରଚାଳିତ ପରି ବର୍ବିକେନ୍ ମୁଣ୍ଡ ହଲାଇ ତାଙ୍କର ସମ୍ମତି ଜ୍ଞାପନ କଲେ, ମାଇକେଲ ଆର୍ଦାଙ୍କୁ ।

ସେଇ ରାତିରେ ପ୍ରାୟ ବାରଟା ପର୍ଯ୍ୟନ୍ତ ମାଇକେଲ୍ ଆର୍ଦାଙ୍କ ସାଙ୍ଗରେ ଇମ୍ପେ ବର୍ବିକେନଙ୍କର ନାନା ବିଷୟରେ ଆଳାପ ଆଲୋଚନା ହୋଇଥିଲା । କିନ୍ତୁ କି କଥାବାର୍ତ୍ତା ହୋଇଥିଲା ତା ଅବଶ୍ୟ କେହି ଠିକ୍ କହି ପାରିବେ ନାହିଁ । ତେବେ ପ୍ରାୟ ରାତି ସାଢେ ବାରଟା ସମୟରେ ବର୍ବିକେନ୍ ଯେତେବେଳେ 'ଏସ୍. ଏମ୍. ଆଟଲାଣ୍ଟା'ରୁ ଓହ୍ଲାଇ ଆସିଲେ, ସେତେବେଳେ ତାଙ୍କ ମୁଖରେ ଗତ କେତେ ଦିନର ଉଦ୍‌ବେଗ ଓ ଉତ୍କଣ୍ଠାର କୌଣସି ଚିହ୍ନ ଦେଖା ଯାଉ ନଥିଲା । ବରଂ ତାଙ୍କର ମୁଖଭାବ ଦେଖି ମନେହେଲା, ବର୍ତ୍ତମାନ ସେ ଖୁବମତ ଫୁର୍ତ୍ତି ଅଛନ୍ତି ।

ସେଇ ରାତାରାତି ସର୍ବତ୍ର ଘୋଷଣା କରି ଦିଆଗଲା ଯେ ପରଦିନ ସକାଳେ ଏକ ଜନସମାବେଶରେ ବିଖ୍ୟାତ ଫରାସୀ ବୈଜ୍ଞାନିକ ମାଇକେଲ୍ ଆର୍ଦା । ତାଙ୍କର ଚନ୍ଦ୍ର ଭ୍ରମଣ ବିଷୟରେ ଏକ ବକ୍ତୃତା ଦେବେ ।

ଟମ୍ପାର ନବନିର୍ମିତ ଟାଉନ ହଲରେ ସ୍ଥାନାଭାବ ହେବବ ବୁଝି ପାରି ବର୍ବିକେନ୍ ଗୋଟିଏ ବଡ଼ ପଡ଼ିଆରେ ସଭାର ଆୟୋଜନ କରି ଥିଲେ । ଅକ୍ଟୋବର ତା ୨୯ରିଖ ସକାଳେ ସଭା ଆରମ୍ଭ ହେବାର ବହୁପୂର୍ବରୁ ପଡ଼ିଆରେ ଆଉ ଶୋରିଷ ପକାଇବାର ଜାଗା ରହିଲା ନାହିଁ । ଯେତେବେଳେ ସଭା ଆରମ୍ଭହେଲା, ବର୍ବିକେନ୍ ଚତୁର୍ଦ୍ଦିଗକୁ ଚାହିଁ ଅନୁମାନ କଲେ, ଅନ୍ତତଃ ତିରିଶ ଲକ୍ଷ୍ୟଲୋକ ଉପସ୍ଥିତ ଅଛନ୍ତି । ବର୍ବିକେନ୍ ଯାହା ଅନୁମାନ କରିଥିଲେ ପ୍ରକୃତରେ ତାହା ସତ ।

ମାଇକେଲ ଆର୍ଦାଁ ଓ ଇମ୍ପେ ବର୍ବିକେନ ଗୋଟିଏ ଉଚ୍ଚମଞ୍ଚ ଉପରେ ବସିଥିଲେ । ସଭା ଆରମ୍ଭ ହେବାରୁ ସେଇ ନିସ୍ତରଙ୍ଗ ଜନସମୁଦ୍ର ମୁଖାମୁଖୀ ଛିଡ଼ାହୋଇ ମାଇକେଲ ଆର୍ଦା କୋମଳ, ଗମ୍ଭୀର ସ୍ୱରରେ କହିଲେ, 'ସମବେତ ଭଦ୍ର ମହୋଦୟଗଣ ! ମୁ କପରି ଚନ୍ଦ୍ରକୁ ଯାଇ ପାରିବ, ତାର ଗୋଟିଏ ଉପାୟ ବତାଇ ଦେବାକୁ ଅଜିର ଏ ସଭାର ଆୟୋଜନ କରା ହୋଇଛି, ଯଦିଓ ଏଭଳି କୌଣସି ବ୍ୟାପାରର ପ୍ରୟୋଜନୀୟତା ସମ୍ବନ୍ଧରେ ମୋର ଯଥେଷ୍ଟ ସନ୍ଦେହ ଅଛି । ସେଇ ସୂତ୍ରରେ ପ୍ରଥମରୁ ଏକଥା ଆପଣମାନଙ୍କୁ ଜଣାଇ ରଖିବା ଉଚିତ ଯେ, କୌଣସି ନିନ୍ଦା-ପ୍ରଶଂସା ମୋତେ ସ୍ପର୍ଶ କରିବ ନାହିଁ । କାହିଁକି ନା ମୁଁ ବିଶ୍ୱାସ କରେ ଯେ, ଅବିଳମ୍ବେ କୌଣସି ଦିନ ଚନ୍ଦ୍ରକୁ ଯିବାର ଅନେକ ସୁବ୍ୟବସ୍ଥା ନିଶ୍ଚୟ

ହେବ । ପରିବର୍ତ୍ତନଶୀଳ ଏ ଦୁନିଆ—ଦର୍ଶନ ଶାସ୍ତ୍ର ଚର୍ଚ୍ଚା କରିଥିଲେ ଏ ତଥ୍ୟ ଆପଣମାନେ ନିଶ୍ଚୟ ଜାଣିଥିବେ । ବୈଜ୍ଞାନିକମାନେ ଯାହା କୁହନ୍ତି, ତା ହେଲା, ରୂପାନ୍ତରର ଏଇ ଜଗତରେ ଏକମାତ୍ର ସତ୍ୟ ହେଉଛି ପ୍ରଗତି । ମନୁଷ୍ୟର କ୍ଷମତା ଅସୀମ । ବୁଦ୍ଧିବୃତ୍ତି ସାହାଯ୍ୟରେ ବସ୍ତୁ ଜଗତରେ ସେ ଅନେକ କିଛୁ ବ୍ୟାଖ୍ୟା କରି ପାରେ ; ଏପର୍ଯ୍ୟନ୍ତ ଯେଉଁସବୁ ପ୍ରକ୍ରିୟାର ବ୍ୟାଖ୍ୟା ସେ କରି ପାରିନି, ଉନ୍ନତର ଅନିବାର୍ଯ୍ୟ ଧାରାରେ ଆସ୍ଥାବାନ ବୋଲି ମୁଁ ବିଶ୍ୱାସ କରେଯେ ଅବିଲମ୍ବେ ସେ ସେଗୁଡ଼ିକର ଗ୍ରହଣ ଯୋଗ୍ୟ ବ୍ୟାଖ୍ୟା କରି ପାରିବ । ପୃଥିବୀର ପ୍ରତ୍ୟେକ ବିଚିତ୍ର ସୃଷ୍ଟି ମନୁଷ୍ୟର ଏଇ ସୀମାହୀନ ବୁଦ୍ଧିବୃତ୍ତିର ହିଁ ପରିଚୟ ଦିଏ । ଗୋଟିଏ ଉଦାହରଣ ଦେଲେ ଏ ବିଷୟଟି ପରିଷ୍କାର ହୋଇଯିବ । ପ୍ରଥମେ ମନୁଷ୍ୟ ଯାତାୟାତ ପାଇଁ ଇତର ପ୍ରାଣୀମାନଙ୍କୁ ବ୍ୟବହାର କରୁଥିଲା, ପରେ ଯନ୍ତ୍ରଯାନ ପ୍ରଥମେ ଗୋରୁ ଗାଡ଼ି, ତାପରେ ଘୋଡାଗାଡ଼ି, ତାପରେ ମଟର, ରେଲ, ପ୍ରଥମେ ଆହୁଲାଟଣା ନୌକା, ପରେ ବାଷ୍ପଚାଳିତ ଜାହାଜ । ମୋର ମନେହୁଏ ଭବିଷ୍ୟତର ମନୁଷ୍ୟମାନେ କେବଳ କମାଣ ଗୋଳାରେ ଚଢ଼ି ଯାତାୟାତ କରିବେ । ଏଥିରେ ସମୟ ଯେମିତି କମ୍ ଲାଗିବ, ପରିଶ୍ରମ ମଧ୍ୟ ସେମିତି ଯଥେଷ୍ଟ କମ୍ ହେବ । ଆପଣମାନେ ହୁଏତ କହିବେ, ଗୋଳାଟି ଭୟାନକ ଦ୍ରୁତ ଗତି କରିବ ବୋଲି ତା ଭିତରେ ରହିବା ଅସମ୍ଭବ । କିନ୍ତୁ ଏଇ କଥାଟା ଯୁକ୍ତି ସଂଗତ କି ନା ଭାବି ଦେଖିବାକୁ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି । ଆମର ଏଇ ପୃଥିବୀ—ଯେଉଁଠି ମନୁଷ୍ୟର ଏକଛତ୍ର ଅଧିପତ୍ୟ—ତାର ଗତି ପ୍ରତି ଘଣ୍ଟାରେ ନ୍ୟୂନପକ୍ଷେ ଛଅଶ ହଜାର ମାଇଲ । ଅବଶ୍ୟ ଏପରି ପ୍ରଶ୍ନ ନକରି ଅନେକ ଆଉ ଗୋଟିଏ ମୌଳିକ ପ୍ରଶ୍ନର ଅବତାରଣା କରିବେ । ସେମାନେ କହିବେ, ମନୁଷ୍ୟ ସୀମାବଦ୍ଧ ଜୀବ, ପୃଥିବୀସୀମାର ବାହାରକୁ

ଯିବାର ଶକ୍ତି ତାର ନାହିଁ, ପୃଥିବୀ ଛାଡ଼ି ଗ୍ରହ ଗ୍ରହାନ୍ତରକୁ ଯିବାର କ୍ଷମତା ତାର କୌଣସି ସମୟରେ ହେବ ନାହିଁ। କିନ୍ତୁ ଏଇ ଧାରଣା ଯେ ଏକ ବିରାଟ ଭ୍ରାନ୍ତ ସେଟା କ'ଣ ଆଖିରେ ଆଙ୍ଗୁଳି ଦେଇ ଦେଖାଇ ଦେବାକୁ ହେବ ! ଆଜି ଆମେମାନେ ପ୍ରବଳ ସାଗର, ମହାସାଗରରେ ଅନାୟାସରେ ଯାତ୍ରା କରୁଛନ୍ତି ; ଆକାଶ କ'ଣ ତାଠାରୁ ଆହୁରି ଅଜେୟ ? ମୁଁ ସେହି ଅଦୂର ଭବିଷ୍ୟତ ସ୍ପଷ୍ଟ ଦେଖି ପାରୁଛି, ସୁନୀଲ ଶୂନ୍ୟ ଆସିଛି ମନୁଷ୍ୟର ଅଧିକାରକୁ, ପୃଥିବୀର ଅର୍ଦ୍ଧେ ଲୋକ ଜଳବାୟୁ ପରିବର୍ତ୍ତନ ପାଇଁ ଚନ୍ଦ୍ରକୁ ଯାଉଛନ୍ତି।'

ମାଇକେଲ ଆର୍ଡା ନିଶ୍ୱାସ ନେବାକୁ ଟିକେ ଚୁପ ହେବାରୁ ଜଣେ ଶ୍ରୋତା ପଚାରିଲେ, 'ଗ୍ରହଗୁଡ଼ିକରେ କ'ଣ କୌଣସି ପ୍ରାଣୀ ଅଛନ୍ତି ?'

'ଏଠାରେ ଜଣେ ଶ୍ରୋତା ମୋତେ ପଚାରୁଛନ୍ତି ଯେ ଗ୍ରହଗୁଡ଼ିକରେ କୌଣସି ଜୀବ ଜନ୍ତୁ ଅଛନ୍ତି ନା ନାହିଁ। ମାଇକେଲ ଆର୍ଡା ପୁଣି ତାଙ୍କର ବକ୍ତୃତା ଆରମ୍ଭ କଲେ, 'ଉତ୍ତରରେ ମୁଁ କହିବି, ନିଶ୍ଚୟ ଅଛନ୍ତି। ପୃଥିବୀ ତ ପୁଣି ଗୋଟିଏ ଗ୍ରହ, ପୃଥିବୀରେ କେତେ ରକମ ପ୍ରାଣୀ ଯେ ଅଛନ୍ତି ତାର ଇୟତ୍ତା ନାହିଁ, କୁତାର୍କ, ଫ୍ୟୁଟେନନବର୍ଗ, ବର୍ଣ୍ଣାର୍ଡିନ ପ୍ରଭୃତି ବୈଜ୍ଞାନିକଗଣ ଅନେକ ଆଲୋଚନା କରି ଏଇ ମୀମାଂସାରେ ପହଞ୍ଚିଛନ୍ତି ଯେ ସବୁ ଗ୍ରହରେ ଜୀବଜନ୍ତୁ ଅଛନ୍ତି। ସେମାନଙ୍କର ସେଇ ପରୀକ୍ଷା - ମଣ୍ଡିତ ଯୁକ୍ତି ଜାଲର ପୁନରାବୃତ୍ତି ନକରି କେବଳ ମାତ୍ର ଏଇ କଥା କହିବି ଯେ, ଗ୍ରହ, ଉପଗ୍ରହରେ ଜୀବଜନ୍ତୁ ଅଛନ୍ତି କି ନା, ତାହା ମୋପରି ମୂର୍ଖଲୋକ ପକ୍ଷରେ କହିବାକୁ ସାଜେନା। ଅଛନ୍ତି କି ନାହାନ୍ତି ଜାଣେନା ବୋଲି ତ ଦେଖିବାକୁ ଯାଉଛି।'

ଆର୍ଡା ଏକଥା କହିବା ସଙ୍ଗେ ସଙ୍ଗେ ସଭାରେ ଖୁବ୍ ହଇଚଇ

ପଡ଼ିଗଲା । ପାର୍ଟିରୁଣ୍ଡ କମିଲା ପରେ ମାଇକେଲ ଅର୍ଦ୍ଧାଂ ପୁଣି କହିଲେ, 'ଗ୍ରହ ଉପଗ୍ରହରେ ଯେ ମନୁଷ୍ୟ ଅଛନ୍ତି, ଇଚ୍ଛାକଲେ ତାର ପ୍ରଚୁର ପ୍ରମାଣ ଦେଖାଯାଏ । ସେଇ ସବୁ ପ୍ରମାଣ ଦେବାପାଇଁ ମୁଁ ଏଠାକୁ ଆସିନାହିଁ । ଯନ୍ତ୍ର କେହି କହିବାକୁ ଚାହାନ୍ତି ସୌରଜଗତ ବାସ କରିବା ପାଇଁ ଅଯୋଗ୍ୟ, ତାର କୌଣସି ପ୍ରମାଣ ସେ କ'ଣ ଦେଇ ପାରିବେ ? ଆପଣମାନେ ଜାଣନ୍ତି ଆମ ପୃଥିବୀର ଉପଗ୍ରହ ମାତ୍ର ଗୋଟିଏ, ଯାହା ମୋର ଗନ୍ତବ୍ୟ ସ୍ଥଳ । ଆଉ ମଧ୍ୟ ଏମିତି ଗ୍ରହ ଅଛି ଯାହାର ଉପଗ୍ରହ ଏକାଧିକ । ତଥାପି ସେଗୁଡ଼ିକ ବାସ ଯୋଗ୍ୟ ନୁହଁ, କେବଳ ଏଇ ପୃଥିବୀ ବାସଯୋଗ୍ୟ, ଏକଥା କ'ଣ ବିଶ୍ୱାସ କରିଯାଏ ? ପୃଥିବୀର ଋତୁଚକ୍ରର ଆବର୍ତ୍ତନ କି ଭଳି ଜଟିଳ ଥରେ ଭାବି ଦେଖନ୍ତୁ ତ ? କେତେବେଳେ ଅତ୍ୟନ୍ତ ଗରମରେ ପ୍ରାଣ କଣ୍ଠାଗତ, କେତେବେଳେ ଖୁବ୍ ଶୀତରେ ଶରୀର ରକ୍ତ ଜମାଟ ବାନ୍ଧି ଯିବାଭଳି ଅବସ୍ଥା । ପୃଥିବୀ ତା ମେରୁଦଣ୍ଡ ଉପରେ ଅଳ୍ପ ବକ୍ର ଭାବରେ ଅବସ୍ଥିତ ରହି ସୂର୍ଯ୍ୟର ଚତୁର୍ଦ୍ଦିଗରେ ଘୁରେ ବୋଲି ଦିନ ଓ ରାତିର ବ୍ୟବଧାନ, ଋତୁ ଋତୁରେ ବୈଚିତ୍ର୍ୟ, ଏବଂ ଋତୁ ପରିବର୍ତ୍ତନ ସମୟରେ ଆମମାନଙ୍କର ଏତେ ଅସୁସ୍ଥତା, କିନ୍ତୁ ବୃହସ୍ପତିକୁ ଲକ୍ଷ୍ୟ କରନ୍ତୁ, ସେ ତାର ମେରୁଦଣ୍ଡ ଉପରେ ଈଷତ୍ ବକ୍ର ଭାବରେ ଅବସ୍ଥିତ, ଅତି ସାମାନ୍ୟ, ସେଇ ବକ୍ରତା ଏବଂ ସେଇ କାରଣରୁ ସେଠାରେ ବର୍ଷଚକ୍ରରେ ଏପ୍ରକାର ଉପଘାତ ଧରଣ ଋତୁର ସମାବେଶ ହୁଏନା । ତେଣୁ ଅସୁସ୍ଥତା ସେଠି ନିଃସନ୍ଦେହରେ ଅନେକ କମ । ବୃହସ୍ପତି ଯେ ଏ ବିଷୟରେ ପୃଥିବୀ ଠାରୁ ଢେର ଭଲ, ସେ କଥା ସ୍ପଷ୍ଟ ବୁଝା ଯାଉଛି ।'

ଏହି କଥା କହୁଥିଲାବେଳେ ପ୍ରଚଣ୍ଡ କରତାଳି ଭିତରେ ମାଇକେଲ ଅର୍ଦ୍ଧାଙ୍କର କଣ୍ଠସ୍ୱର ଶୁଭିଲା ନାହିଁ । କିଛି ସମୟ ପରେ ସଭାର ଗଣ୍ଡଗୋଳ ଯେତେବେଳେ ଟିକେ ଶାନ୍ତ ପଡ଼ିଲା, ଭିଡ଼ ଭିତରୁ ଜଣେ

ଲୋକ ଛୁଡ଼ା ହୋଇ କହିଲେ, 'ଦେଖନ୍ତୁ ମିସ୍ ସେ୍ମ, ଆପଣଙ୍କ ମତରେ ଚନ୍ଦ୍ରରେ ମଣିଷ ଅଛନ୍ତି ? ତାହେଲେ ତାଙ୍କର ଶ୍ୱାସ ପ୍ରଶ୍ୱାସର ପ୍ରୟୋଜନ ନାହିଁ, କାହିଁକି ନା ଚନ୍ଦ୍ରରେ ବାୟୁମଣ୍ଡଳ ନାହିଁ ବୋଲି ମୁଁ ଜାଣେ ।'

'ସତେ ନା କ'ଣ ? ବିଦ୍ରୂପ ସ୍ୱରରେ ମାଇକେଲ ଆର୍ଡାଁ କହିଲେ, 'ଆପଣ ସେକଥା ଜାଣିଲେ କିପରି ? ଚନ୍ଦ୍ରକୁ ଯାଇ ?'

'ପଣ୍ଡିତ ଲୋକମାନେ କହନ୍ତି ଚନ୍ଦ୍ରରେ ବାୟୁମଣ୍ଡଳ ନାହିଁ, ଏବଂ ସେମାନଙ୍କର କଥା ଅବିଶ୍ୱାସ କରିବାର କୌଣସି ଯୁକ୍ତିସଙ୍ଗତ କାରଣ ଖୋଜି ପାଏନା ।'

'ସତେ ନା କ'ଣ ?' ମାଇକେଲ ଆର୍ଡାଁ କହିଲେ ।

'ନିଶ୍ଚୟ ।'

'ଦେଖନ୍ତୁ, ମାଇକେଲ ଆର୍ଡାଁ କହିଲେ, 'ଯେଉଁମାନେ ଜାଣି, ଶୁଣି, ଦେଖି, ସବୁକିଛି ପରୀକ୍ଷା ନିରୀକ୍ଷା କରି ପଣ୍ଡିତ, ସେମାନେ ଶ୍ରଦ୍ଧାଭାଜନ କିନ୍ତୁ ଯେଉଁମାନେ କିଛି ନଜାଣି ପଣ୍ଡିତ, ସେମାନେ ମୋର ଘୃଣାର ପାତ୍ର । ଆପଣ ଏ ମଧ୍ୟରୁ କେଉଁ ଶ୍ରେଣୀର ପଣ୍ଡିତମାନଙ୍କ କଥା ଶୁଣି ଭାବୁଛନ୍ତି ଚନ୍ଦ୍ରରେ ବାୟୁମଣ୍ଡଳ ନାହିଁ ?

'ବାୟୁମଣ୍ଡଳ ଯେ ନାହିଁ ତାର ଅଗଣିତ ଅକାଟ୍ୟ ପ୍ରମାଣ ମୋ ହାତରେ ଅଛି । ଆପଣ ବୋଧେ ଜାଣନ୍ତି ଯେ, ସୂର୍ଯ୍ୟକିରଣ ବାୟୁମଣ୍ଡଳ ଦେଇ ଆସିଲେ ଲମ୍ବ ଭାବରେ ଆସି ପାରେନା, ତୀର୍ଯ୍ୟକ ଭାବରେ ଆସେ । ଅର୍ଥାତ୍ ଆଲୋକ ରଶ୍ମିର ପରାବୃତ୍ତି ଘଟେ ! ଚନ୍ଦ୍ର ନକ୍ଷତ୍ରକୁ ଢାଙ୍କି ରଖିଲେ ନକ୍ଷତ୍ର ଆଲୋକ ଚନ୍ଦ୍ରର ପାର୍ଶ୍ୱ ଦେଇ ଆସେ, କିନ୍ତୁ ଆଲୋକର କିଛିମାତ୍ର ପରାବୃତ୍ତି ହୁଏ ନାହିଁ । ଏଇଥିରେ ହିଁ ପ୍ରମାଣିତ ହେଉଛି ଯେ ଚନ୍ଦ୍ରରେ ବାୟୁମଣ୍ଡଳ ନାହିଁ ।'

ଆର୍ଡାଁଙ୍କ କଣ୍ଠରେ ବ୍ୟଙ୍ଗତା ପରିସ୍ଫୁଟ । ସେ କହିଲେ ସତେ ନା କ'ଣ ?

ଭଦ୍ରଲୋକ ଗମ୍ଭୀର ସ୍ୱରରେ ଉତ୍ତର ଦେଲେ, 'ହଁ' ସତର ଶହ ପନର ମସିହାରେ ବିଖ୍ୟାତ ଜ୍ୟୋତିର୍ବିଦ ଲ୍ୟୁଭିଲେ ଏବଂ ହେଲି ଚନ୍ଦ୍ରଗ୍ରହଣ ସମୟରେ ଭଲ ଭାବରେ ପର୍ଯ୍ୟବେକ୍ଷଣ କରି ଦେଖିଥିଲେ ଯେ ଚନ୍ଦ୍ରରେ ଏକ ଅଦ୍ଭୁତ ଧରଣର ଆଲୋକ ଦେଖା ଯାଉଛି । ସେମାନେ ଉଲ୍କାର ଆଲୋକକୁ ଚନ୍ଦ୍ରର ଆଲୋକ ବୋଲି ଭୁଲ କରିଥିଲେ ।' 'ସେକଥା ଶୁଣନ୍ତୁ । କାରଣ, ସତର ଶହ ଏକାଅଶୀ ମସିହାରେ ହର୍ସେଲ ଚନ୍ଦ୍ରରେ ଆଲୋକ ଦେଖିଥିଲେ ।

'ଦେଖିଥିଲେ ଠିକ, କିନ୍ତୁ ସେଗୁଡ଼ିକ ପ୍ରକୃତରେ କ'ଣ ତାହା ସେ ନିଜେ ଠିକ କରି ପାରି ନ'ଥିଲେ ।

'ତାହେଲେ ମୁଁ ଦେଖୁଛି, ଆପଣ ଜଣେ "ଚନ୍ଦ୍ରତତ୍ତ୍ୱବିଦ୍" ! 'ମୁଁସେ ବିୟର ବା ମଦଲଙ୍କ ପରି ପଣ୍ଡିତମାନେ ମଧ୍ୟ ମାନିନେଇ ଥିଲେ ଯେ ଚନ୍ଦ୍ରରେ ବାୟୁମଣ୍ଡଳ ନାହିଁ ।

ମ'ଇକେଲ ଆର୍ଡାଁ ଏଥର ଗମ୍ଭୀର ହେଲେ । ସେ କହିଲେ 'ଫରାସୀ ଜ୍ୟୋତିର୍ବିଦ୍ ମସିଁୟେ ଲସେଦତଙ୍କ ନାମ ଶୁଣିଛନ୍ତି ? ଶୁଣିଥିଲେ ନିଶ୍ଚୟ ତାଙ୍କର ପର୍ଯ୍ୟବେକ୍ଷଣ ଉପରେ ଆପଣଙ୍କର ଶ୍ରଦ୍ଧା କମନ୍ତା ।'

'ଶ୍ରଦ୍ଧା ମୋର ଅଛି ।'

'କିନ୍ତୁ ଚନ୍ଦ୍ରରେ ବାୟୁମଣ୍ଡଳ ନାହିଁ, ଏକଥା ସେ କହି ନାହାନ୍ତି, ବରଂ ତାଙ୍କର ଅଭିମତ ହେଲା ଚନ୍ଦ୍ରରେ ବାୟୁମଣ୍ଡଳ ଅଛି ।'

'ଯଦିଓ ବାୟୁମଣ୍ଡଳ ଥାଏ, ତାହା ନିଶ୍ଚୟ ଖୁବ୍ ହାଲୁକା, ମନୁଷ୍ୟର ବ୍ୟବହାର ପକ୍ଷେ ଏକାନ୍ତ ଅନୁପଯୁକ୍ତ ।'

'ଯେତେ ହାଲୁକା ହେଉନା କାହିଁକି ଜଣକ ଉପଯୋଗୀ ବାୟୁ ନିଶ୍ଚୟ ମିଳିବ । ତାଛଡ଼ା ଥରେ ଚନ୍ଦ୍ରରେ ପହଞ୍ଚି ପାରିଲେ ହେଲା, ତାପରେ ହୁଏତ ବୈଜ୍ଞାନିକ ଉପାୟରେ ଅମ୍ଳଜାନ ପ୍ରସ୍ତୁତ କରି ନେଇ ହେବ । ଚନ୍ଦ୍ରରେ ଯେପରି ବାୟୁ ଥାଉନା କାହିଁକି, ବାୟୁ ଅଛି ବୋଲି

ଯେତେବେଳେ ଆପଣ ସ୍ୱୀକାର କରୁଛନ୍ତି, ସେତେବେଳେ ଏକଥା ବି ଆପଣ ସ୍ୱୀକାର କରୁଛନ୍ତି ଯେ ଚନ୍ଦ୍ରରେ ଜଳ ମଧ୍ୟ ଅଛି, କାରଣ ଜଳ ନ ରହିଲେ ବାୟୁ ରହିବ କିପରି ?

'ଅଚ୍ଛା ଧରି ନିଅନ୍ତୁ, ତା ନହୋଇ ବି ହେଲା ! କିନ୍ତୁ ଗୋଳାଟା ଯେତେବେଳେ ବାୟୁସ୍ତର ଭେଦକରି ଉପରକୁ ଉଠିବ, ସେଇଁ ଘର୍ଷଣ ଜନିତ ଉତ୍ତାପ—'

ବାଧାଦେଇ ମାଇକେଲ ଆର୍ଦାଁ କହିଲେ, 'ସେଇ ଉତ୍ତାପରେ ମୁଁ ପୋଡ଼ି ମରିବି ଭାବୁଛନ୍ତି ? ତାହା ଯଦି ଭାବୁଥାନ୍ତି ତାହାହେଲେ ମସ୍ତବଡ଼ ଭୁଲ୍ କରୁଛନ୍ତି, କାରଣ ବାୟୁସ୍ତର ଭେଦ କରି ଯିବାକୁ କେଇ ସେକେଣ୍ଡ ଲାଗିବ ଜାଣନ୍ତି ତ ? ତା ବ୍ୟତୀତ ଗୋଳାର ଖୋଳପଟ ଖୁବ୍ ମୋଟା ହେବ ।'

'ଖାଦ୍ୟ ଏବଂ ପାଣୀୟର କି ବ୍ୟବସ୍ଥା କରିବେ ?'

'ବର୍ଷକ ପାଇଁ ସାଙ୍ଗରେ ନେଇଯିବି । ମାତ୍ର ଚାରିଦିନର ପଥ, ତାପରେ ଚନ୍ଦ୍ରରେ ଯାଇ ଯାହେଉ କିଛି ଗୋଟାଏ ବ୍ୟବସ୍ଥା କରିବାକୁ ହେବ ।'

'ଯାତ୍ରା ସମୟରେ ନିଶ୍ୱାସନେବାର ବାୟୁ ପାଇବେ କେଉଁଠୁ ?'

'ବୈଜ୍ଞାନିକ ଉପାୟରେ କରି ନେବାର ବ୍ୟବସ୍ଥା କରିବି ।' 'ଚନ୍ଦ୍ରରେ ଯଦିବା ଗୋଳାଟା ଯାଇ ପହଞ୍ଚେ—ଅବଶ୍ୟ ଆଦୌ ପହଞ୍ଚିବ କି ନା ସେ ବିଷୟରେ ମୋର ଯଥେଷ୍ଟ ସନ୍ଦେହ ଅଛି —କିନ୍ତୁ ଯଦିବା ଯାଇଁ ପହଞ୍ଚିଦ, ପ୍ରଚଣ୍ଡ ବେଗରେ ଯାଇଁ ଚନ୍ଦ୍ରରେ ପିଟି ହୋଇ ଯିବେ—'

'ପୃଥିବୀରେ ପଡ଼ିଲେ ଯେତେ ଜୋରରେ ପଡ଼ିଥାନ୍ତି, ସେଠି ଅନ୍ତତଃ ତାର ଛ'ଗୁଣ କମ ହେବ ।'

'ତାହେଲେ ବି ଆପଣ ଭଙ୍ଗାକାଚ ପରି ଭାଙ୍ଗି ଚୁନ୍ ଚୁନ୍ ହୋଇ ଯିବେ !'

'ହେବ ନାହିଁ, କାରଣ ଇଚ୍ଛା କଲେ ପତନର ବେଗ କମାଇ ଦେଇହେବ। ମୁଁ କେତେଗୁଡ଼ିଏ ହାଉଇ ସାଙ୍ଗରେ ନେବି, ଉପଯୁକ୍ତ ସମୟରେ ସେଥିରେ ଅଗ୍ନି ସଂଯୋଗ କଲେ ଗୋଲାର ବିପରୀତ ଦିଗକୁ ଏକ ଗତି ସୃଷ୍ଟି ହେବ, ସୁତରାଂ ମୁଁ ନିର୍ବିଘ୍ନରେ ଚନ୍ଦ୍ରରେ ଅବତରଣ କରିପାରିବି।'

ଥା ଥା ମା-ମା- ହୋଇ ଭଦ୍ରଲୋକ କହିଲେ, 'ତାହେଲେ ଆପଣ ନହେଲେ ଯାଇ ଚନ୍ଦ୍ରରେ ପହଞ୍ଚିଲେ, କିନ୍ତୁ ପୃଥିବୀକୁ ଫେରିବେ କିପରି ?'

'ଓ ଏଇ କଥା ! ହସି ଉଠିଲେ ମାଇକେଲ ଆର୍ଦା। ମୁଁ ଫେରି ଆସିବି, ଆପଣଙ୍କୁ ଏକଥା କିଏ କହିଲା ? ମୁଁ ତ ଆଉ ଫେରିବି ନାହିଁ।'

ଏକଥା ଯିଏ ଶୁଣିଲା ସେ ବଜ୍ରାହତ ପରି ଛିଡ଼ା ହୋଇ ରହିଲା। ଏଇ ଦୁଃସାହସୀ ଲୋକଟା କହୁଛନ୍ତି କ'ଣ ? ଯେଉଁ ଭଦ୍ରଲୋକ ଏତେ ସମୟ ଧରି ଜେରା କରୁଥିଲେ ସେ କହିଲେ, 'ଆଉ ଗୋଟିଏ ମସ୍ତବଡ଼ ବିପଦ ଆପଣଙ୍କ ସମ୍ମୁଖରେ ଦେଖିବାକୁ ପାଉଛି। ଯେଉଁ ମୁହୂର୍ତ୍ତରେ ଏତେ ବଡ଼ ଗୋଟାଏ ଗୋଳା କମାଣର ନଳରୁ ବାହାରିବ, ସାଙ୍ଗେ ସାଙ୍ଗେ ଏମିତି ଗୋଟାଏ ଧକ୍କା ଲାଗିବ ଯେ ସେଥିରେ ଗୋଳା ଭିତରେ ଆପଣଙ୍କ ହାତ ଗୋଡ଼ ଭାଙ୍ଗି ଚୁରମାର ହୋଇ ଯିବ !'

ଟିକିଏ ଚିନ୍ତିତ ସ୍ୱରରେ ମାଇକେଲ ଆର୍ଦା କହିଲେ, ଏତେବେଳେକେ ଆପଣ ଗୋଟିଏ ପ୍ରକୃତ ବାଧାର ପ୍ରଶ୍ନ ଉଠାଇଛନ୍ତି। ସେ କଥାରେ ମୁଣ୍ଡ ନଖେଲାଇଲେ କି ଚଳିବ। ମୋର ବନ୍ଧୁ ଏଥିର ଗୋଟାଏ ଉପାୟ ନିଶ୍ଚୟ ବାହାର କରିବେ।'

ଭଦ୍ରଲୋକ କହିଲେ, 'ଏତେବଡ଼ ମୁଣ୍ଡଥାଇଁ ଲୋକଟି କିଏ ? ବୟସ୍କର କହିବେକି ?'

ଗମ୍ଭୀର ସ୍ୱରରେ ମାଇକେଲ୍ ଆର୍ଦ୍ଦାଁ କହିଲେ, 'ସେ ହେଉଛନ୍ତି ଗନକୁବର ସୁବିଖ୍ୟାତ ସମ୍ରାଟ ଇମ୍ପେ ବର୍ଦ୍ଦିକେନ୍ ।'

'ଓଃ' ସେଇ ଓଲୁଟା, ଯାହାର ପ୍ରସ୍ତାବରେ ସମଗ୍ର ପୃଥିବୀଟା ବୋକାପରି ନାଚ ଉଠିଛୁ ।

କାହାରି ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ ଭଦ୍ରଲୋକ ବର୍ଦ୍ଦିକେନଙ୍କୁ ଲକ୍ଷ୍ୟକରି କଥାଟା କହିଲେ । ବର୍ଦ୍ଦିକେନ ଅଉ ନିଜକୁ ସମ୍ଭାଳି ରଖି ପାରିଲେ ନାହିଁ । ମଞ୍ଚ ଉପରୁ ଡେଇଁପଡ଼ି ଭଦ୍ରଲୋକଙ୍କ ଅଡ଼କୁ ଯିବାକୁ ଚେଷ୍ଟାକଲେ । କିନ୍ତୁ ଏଇ ପ୍ରଚଣ୍ଡ ଭିଡ଼ ମଧ୍ୟରେ ଭଦ୍ରଲୋକ କେଉଁଠି ଯେ ମିଳାଇଗଲେ ଆଉ ବୁଝି ହେଲାନି ।

ମାଇକେଲ୍ ଅର୍ଦ୍ଦାଁଙ୍କର ଦୁଃସାହସୀ ସଂକଳ୍ପରେ ଜନତା ପାଗଳ ହୋଇ ଉଠିଥିଲେ । ପ୍ରଶଂସାରେ ପଞ୍ଚମୁଖ ହୋଇ ଉଠିଥିଲେ । ବର୍ଦ୍ଦିକେନଙ୍କୁ ମଞ୍ଚଉପରୁ ଓହ୍ଲାଇବାର ସୁଯୋଗ କେହି ଆଉ ଦେଲେ ନାହିଁ । ସେମାନେ ଅର୍ଦ୍ଦାଁ ଓ ବର୍ଦ୍ଦିକେନଙ୍କୁ ମଞ୍ଚସହିତ କାନ୍ଧରେ ଉଠାଇ ନେଇ ହଇ ଚଇ କରି କରି ଜାହାଜ ଘାଟ ନିକଟକୁ ଅଗେଇଲେ । ମଞ୍ଚଟା କାନ୍ଧରେ ବହିବା ଏକ ପରମ ଗୌରବର ବିଷୟ ହୋଇଗଲା, ସେଇ କାଠର ମଞ୍ଚଟା କାନ୍ଧେଇବା ପାଇଁ ତୁମୁଳ ପ୍ରତିଯୋଗିତା ଆରମ୍ଭ ହୋଇଗଲା ।

ଯେଉଁ ଭଦ୍ରଲୋକ ଏତେ ସମସ୍ତ ଧରି ଅର୍ଦ୍ଦାଁଙ୍କୁ ଜେରା କରୁଥିଲେ, ସେ କିନ୍ତୁ ଏଇ ସୁଯୋଗରେ ପଳାଇ ଯାଇ ନାହାଁନ୍ତି । ଶୋଭାଯାତ୍ରା ସାଙ୍ଗରେ ସେ ମଧ୍ୟ ଜାହାଜ ଘାଟ ଅଡ଼କୁ ଆଗେଇ ଚାଲିଛନ୍ତି । ମଞ୍ଚଟା ଯେତେବେଳେ ଟମ୍ପା ବନ୍ଦରରେ ଓହ୍ଲାଇ ଦିଆଗଲା, ବର୍ଦ୍ଦିକେନ ଓ ଅର୍ଦ୍ଦାଁ ମଞ୍ଚ ଉପରୁ ଓହ୍ଲାଇ ଆସିଲେ ।

ଓହ୍ଲାଇ ଆସି ବର୍ବିକେନ ସେଇ ଭଦ୍ରଲୋକଙ୍କୁ ମୁହାଁ ମୁହିଁ ଛୁଡ଼ା ହୋଇଥିବାର ଦେଖିଲେ । ବହୁ କଷ୍ଟରେ ରାଗକୁ ଚାପିରଖି କୋମଳ କଣ୍ଠରେ ଭଦ୍ରଲୋକଙ୍କୁ କହିଲେ, 'ଟିକେ ଶୁଣନ୍ତୁ ! ଏଠିକୁ ଆସନ୍ତୁ, କଥା ଅଛି ।'

ଭଦ୍ରଲୋକ ନୀରବରେ ଭାବଲେଶହୀନ ମୁଖରେ ବର୍ବିକେନଙ୍କୁ ଅନୁସରଣ କଲେ । ଅଳ୍ପ ଟିକେ ଆଡ଼ୁଆଳକୁ ଯାଇ ବର୍ବିକେନ ତୀବ୍ର ଗଳାରେ କହିଲେ, 'ଆପଣଙ୍କ ନାମଟା ଜାଣି ପାରିବି କି ?'

'ଲୋକେ ମୋତେ କ୍ୟାପ୍ଟେନ ନିକଲ ବୋଲି ଜାଣନ୍ତି ।'

'କ୍ୟାପ୍‌ଟେନ ନକଲ !'

'ହଁ ।'

ନିର୍ମେଘ ଆକାଶରୁ ବଜ୍ରପାତ ହେଲେ ଯୁଦ୍ଧ ବର୍ବିଙ୍କେନ ଏମିତି ଚମକି ଉଠିଥାନ୍ତେ କି ନା ସନ୍ଦେହ । 'ଆଜି ଆମମାନଙ୍କର ପ୍ରଥମ ଦେଖା ହେଲା ।'

'ମୁଁ ନିଜେ ଦେଖା କରିବାକୁ ଆସିଛୁ ।'

'ଆପଣ ଆଜି ମୋତେ ଅପମାନିତ କରିଛନ୍ତି ।'

'ହଁ, ଇଚ୍ଛାକରି କରିଛି—ଲକ୍ଷ ଲକ୍ଷ ଲୋକଙ୍କ ସମ୍ମୁଖରେ କରିଛି ।'

'ମୁଁ ତାର ପ୍ରତିଶୋଧ ନେବାକୁ ଚାହେଁ ।' ସ୍ଥିର କଣ୍ଠରେ ବର୍ବିଙ୍କେନ କହିଲେ ।

'ବେଶ, ଏକ୍ଷଣି ଏହାର ମୀମାଂସା ହୋଇ ଯାଉ । ମୁଁ ପ୍ରସ୍ତୁତ ଅଛି ।'

'ନା, ବର୍ତ୍ତମାନ ସମୟ ନାହିଁ । ଅମମାନଙ୍କର କୌଣସି ଏକ ଗୋପନ ସ୍ଥାନରେ ମୁଖାମୁଖୀ ହେବା ଉଚିତ । ଟମ୍ପା ଠାରୁ ତିନିମାଇଲ୍ ଦୂରରେ ଯେଉଁ ବଣଟା ଅଛି ଚିହ୍ନିଛନ୍ତି ?'

'ଖୁବ୍ ଭଲ ଭାବରେ ଚିହ୍ନେ ।'

'କାଲି ଭୋର ପାଞ୍ଚଟା ବେଳେ ସେଠି ପହଞ୍ଚି ପାରିବେ କି ?'

'ସାରବ, ଅବଶ୍ୟ ଯଦି ଅନୁଗ୍ରହ କରି ଆପଣ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ରାଜି ଥା'ନ୍ତି ।'

'ଆପଣଙ୍କ ବନ୍ଧୁକଟା ସାଙ୍ଗରେ ଆଣିବାକୁ ଭୁଲିବେ ନାହିଁ ।'

ବିଦ୍ରୂପ ସ୍ୱରରେ କ୍ୟାପ୍‌ଟେନ ନକଲ କହିଲେ, 'ଆପଣ ନ ଭୁଲିଲେ ହେଲା ।'

ବର୍ଟିକେନ ସାଙ୍ଗେ ସାଙ୍ଗେ ସେ ସ୍ଥାନ ପରିତ୍ୟାଗ କଲେ ।

ସେଦିନ ସାରାରାତି ବର୍ଟିକେନଙ୍କର ଅନିଦ୍ରା କଟିଥିଲା ବିଛଣାରେ ଛଟପଟ ହୋଇ । ପରଦିନର ଦ୍ୱନ୍ଦ୍ୱ ଯୁଦ୍ଧର ଉତ୍ତେଜନାରେ ନୁହେଁ ; କମାଣରୁ ଗୋଳା ବାହାରିବା ସମୟରେ ଗୋଳା ଦେବାରେ ଯେଉଁ ଧକ୍‌କା ଲାଗିବ, କିପରି ସେଇ ଧକ୍‌କା ସମ୍ଭାଳି ହେବ, ତାରି ଚିନ୍ତାରେ ।

ଅକ୍‌ଟୋବର ବାଇଶ ତାରିଖ ଭୋର ହେବାର ଆଗରୁ ମ୍ୟାଟସନ ଊର୍ଦ୍ଧ୍ୱଶ୍ୱାସରେ ଛୁଟିଆସି ଆର୍ଡେଙ୍କର ଶୋଇବା ଘର ଦରଜାରେ ଖୁବ୍ ଜୋରରେ ଧକ୍‌କା ମାରିବାକୁ ଲାଗିଲେ । ପ୍ରଥମେ କିଛି ଜବାବ ମିଳିଲା ନାହିଁ । ଶେଷକୁ ମ୍ୟାଟସନ ଦରଜାରେ ପ୍ରଚଣ୍ଡ ଭାବରେ ଧକ୍‌କା ମାରି ମାରି କହିଲେ, 'ଦରଜା ଖୋଲନ୍ତୁ ମସିୟେ ଆର୍ଡେ, ଆପଣଙ୍କୁ ଧର୍ମର ଦୋହାଇ, ଦରଜାଟା ଖୋଲନ୍ତୁ । ସାଙ୍ଘାତିକ ବିପଦ, ଖୋଲନ୍ତୁ ଦରଜାଟା !'

ସେତେବେଳକୁ ବି ଠିକ୍ ଭୋର ହୋଇନି । ଝାପ୍‌ସା ଅନ୍ଧାର

ଧରି ରଖିବା ପାଇଁ ସ୍ୱୟଂରେ ସେପର୍ଯ୍ୟନ୍ତ ବିଜୁଳି ଅଳ୍ପ ଜଳୁଛି । ଆର୍ଦ୍ଦା । ତରତରରେ ବଚ୍ଛଣା ଛାଡ଼ି ଉଠି ଦରଜା ଖୋଲିବା ସଙ୍ଗେ ସଙ୍ଗେ ଏକ ଧକ୍କାରେ ତାଙ୍କୁ ଭିତରକୁ ଠେଲି ଦେଇ ମ୍ୟାଟସନ ଘର ଭିତରେ ପଶି କହିଲେ, 'ଯେଉଁ ଭଦ୍ରଲୋକ କାଲି ପ୍ରକାଶ୍ୟ ସଭାରେ ବର୍ବିକେନଙ୍କୁ ଅପମାନିତ କରିଥିଲେ, ବର୍ବିକେନ ତାଙ୍କୁ ଦ୍ୱନ୍ଦ୍ୱ ଯୁଦ୍ଧକୁ ଆହ୍ୱାନ କରିଛନ୍ତି । ସେ ଭଦ୍ରଲୋକ ହେଉଛନ୍ତି ବର୍ବିକେନଙ୍କର ଚିରଦିନର ପ୍ରତିଦ୍ୱନ୍ଦ୍ୱୀ କ୍ୟାପ୍‌ଟେନ ନିକଲ । ଆଜି ଭୋରରୁ ଦ୍ୱନ୍ଦ୍ୱ ଯୁଦ୍ଧ, ଟିକେ ପରେ । ହୁଏତ ନିକଲ, ନହେଲେ ବର୍ବିକେନ ଦୁଇଜଣଙ୍କ ମଧ୍ୟରୁ ଜଣକୁ ନିଶ୍ଚୟ ଆଜି ମୃତ୍ୟୁ ବରଣ କରିବାକୁ ହେବ । ବର୍ବିକେନ ନିଜେ ମୋତେ ଏକଥା କହିଛନ୍ତି । ଆହୁରି ମଧ୍ୟ କହିଛନ୍ତି ଯେ, ପୃଥିବୀ ଅନେକ ଶ୍ରେଷ୍ଠ ବୋଲି ସେ ଦୁଇଜଣ ଏକ ସାଙ୍ଗରେ ବଞ୍ଚି ପାରିବେ ନାହିଁ, କେବଳ ଜଣକ ପାଇଁ ସ୍ଥାନ ହେବ ଏଠାରେ, ସୁତରାଂ ଜଣକୁ ଆଜି ମରିବାକୁ ହେବ । କିନ୍ତୁ ଯେକୌଣସି ଉପାୟରେ ଏ ଲଢ଼ାଇ ଆମକୁ ବର୍ତ୍ତମାନ ବନ୍ଦ ରଖିବାକୁ ହେବ । ବର୍ବିକେନଙ୍କୁ ଆମେ କୌଣସିମତେ ମରିବାକୁ ଛାଡ଼ି ଦେଇ ପାରିବା ନାହିଁ । ଯେକୌଣସି ଉପାୟରେ ଏଇ ଦ୍ୱନ୍ଦ୍ୱଯୁଦ୍ଧ ସ୍ଥଗିତ ରଖିବାକୁ ହେବ । ଅଥଚ ଆପଣ ଏ ବିଷୟରେ ସଚେଷ୍ଟ ନହେଲେ ମୁଁ କୌଣସି ଉପାୟ ଦେଖି ପାରୁନି ମିସିୟେ ଆର୍ଦ୍ଦାଁ ।'

ମାଇକେଲ ଅର୍ଦ୍ଦାଁ ଚଞ୍ଚଳ ହାତରେ ପୋଷାକ ପିନ୍ଧୁ ପିନ୍ଧୁ କହିଲେ, 'ଦେଖୁଛି ଆପଣଙ୍କ ଦେଶର ଲୋକମାନେ ଅଯଥା ହଣାହଣି ହୋଇ ମରନ୍ତି । ମିଷ୍ଟର ବର୍ବିକେନ ବର୍ତ୍ତମାନ କେଉଁଠି ?'

'ମୁଁ ଠିକ୍ ଜାଣିନି । ବୋଧେ ଲଢ଼ାଇ ଜାଗାରେ ଯାଇଁ ପହଞ୍ଚି ଯାଇଥାରିବେନି ।'

'ଲଢାଇ ଜାଗାଟା କେଉଁଠି ?'

'ସେହିର ନିକଟରେ ଗୋଟାଏ ବଣ ଅଛି, ସେଇ ବଣରେ।'

ଯାହା ଜାଣ ଆଉ ମୁହୂର୍ତ୍ତେମାତ୍ର ଡେରି ନକରି ବଣକୁ ଛୁଟିଲେ। ବଡ଼ ରାସ୍ତାରେ ଗଲେ ଡେରି ହୋଇଯିବ ଭାବି ପଡ଼ିଆ ଭିତର ଦେଇ ଛୁଟିଲେ। ଝଡ଼ମଡ଼ ଦୌଡ଼ିଲେ କହିଲେ ଚଳେ। ଦୌଡ଼ୁ ଦୌଡ଼ୁ ମ୍ୟାଟସନ ବର୍ଟିକେନଙ୍କ ସାଙ୍ଗରେ କ୍ୟାପ୍‌ଟେନ ନିକଲଙ୍କର ଅହି-ନକୁଳ ସମ୍ପର୍କ କଥା ସଂକ୍ଷେପରେ ଆର୍ଦାଙ୍କୁ କହିଲେ। ବଣ ଆରମ୍ଭରେ ଜଣେ କାଠୁରିଆ ସାଙ୍ଗରେ ସେମାନଙ୍କର ଦେଖାହେଲା। କାଠୁରିଆକୁ ଦେଖି ଆର୍ଦା ପଚାରିଲେ, 'ବଣ ଭିତରେ କୌଣସି ଶିକାରୀଙ୍କୁ ଦେଖିଛ?'

'ଶିକାରୀ? ହଁ ଜଣେ ବନ୍ଧୁକଧାରୀ ଲୋକକୁ ଟିକେ ଆଗରୁ ଦେଖିଛି।'

'ଟିକେ ଆଗରୁ? କେତେବେଳେ? ବ୍ୟସ୍ତ ଭାବରେ ମ୍ୟାଟସନ ପଚାରିଲେ, କେତେବେଳେ ଦେଖିଲ?'

'ଘଣ୍ଟାଏ ଖଣ୍ଡେ ହେବ।'

ମ୍ୟାଟସନ ଓ ଆର୍ଦା ଏକ ସାଙ୍ଗରେ କହି ଉଠିଲେ, 'ଘଣ୍ଟାଏ ହେବ! ତେବେତ ଏତେବେଳକୁ ସବୁ ଶେଷ ହୋଇ ଯାଇଥିବ! ତମେ କ'ଣ କୌଣସି ବନ୍ଧୁକ ଶବ୍ଦ ଶୁଣିଛ?'

ଉତ୍ତରରେ କାଠୁରିଆ ଏଇ କଥା ଜଣାଇଲା ଯେ, 'ନା, ସେ କୌଣସି ବନ୍ଧୁକର ଶବ୍ଦ ଶୁଣିନି।'

'ଗୋଟିଏ ଥର ବି ଶୁଣିନା?'

'ନା।'

'ଶିକାରୀକୁ କେଉଁଠି ଦେଖିଛ?'

କାଠୁରିଆ ଆଙ୍ଗୁଳି ଦେଖାଇ ଗଭୀର ବଣର ଗୋଟିଏ ପଟକୁ ଦେଖାଇଲା। ମ୍ୟାଟସନଙ୍କ ହାତଧରି ଆର୍ଦା ସାଙ୍ଗେ ସାଙ୍ଗେ ସେଇ ଦିଗକୁ ଛୁଟିଲେ।

କି ଗଭୀର ବଣ ! କେବେ ଯେ ସୂର୍ଯ୍ୟାଲୋକ ତା ଭିତରକୁ ପ୍ରବେଶ କରିଛି, ତାର କୌଣସି ଚିହ୍ନ ନାହିଁ । ବିଶେଷକରି ବଣର ସେଇ ଅଂଶଟା ଏତେ ନିବିଡ଼ ଯେ କେଇହାତ ଦୂରର ମଣିଷକୁ ମଧ୍ୟ ଦେଖି ପାରିବାର ସମ୍ଭାବନା ନାହିଁ । ଅନେକ ସମୟ ଧରି ବଣ ଭିତରେ ବୁଲି ବୁଲି, ଶେଷରେ ଆର୍ଦ୍ଦାଁ କହିଲେ, 'ମିଷ୍ଟର ମ୍ୟାଟସନ, ମୋର ମନେ ହେଉଛି ବର୍ବିକେନ ହୁଏତ ଦ୍ୱନ୍ଦ୍ୱ ଯୁଦ୍ଧର ସଂକଳ୍ପ ତ୍ୟାଗ କରିଛନ୍ତି, ତେଣୁ ବଣକୁ ଆସି ନାହାନ୍ତି ।' ଗମ୍ଭୀର ସ୍ୱରରେ ଟିକେ ଅହମିକା ଦେଖାଇ ମ୍ୟାଟସନ କହିଲେ, 'ଅସମ୍ଭବ ! ମାର୍କିନମାନେ କେବେହେଲେ କଥାର ଖିଲାପ କରନ୍ତି ନାହିଁ । ବିଶେଷକରି ଏସବୁ କ୍ଷେତ୍ରରେ ମୋଟେ ନୁହେଁ ।'

ଆର୍ଦ୍ଦାଁ ଆଉ କୌଣସି କଥା ନକହି ପୁଣି ଖୋଜା ଖୋଜି ଆରମ୍ଭ କଲେ । ବର୍ବିକେନ ଓ ନିକଲଙ୍କ ନାମ ଧରି ବଡ଼ ପାଟିରେ ଡାକ ଡ଼କ ଆହୁରି ଗଭୀର ବଣରେ ପଶିଲେ । କିଛିଦୂର ଆଗେଇ ଯାଇ ମ୍ୟାଟସନ ହଠାତ୍ ଅଟକି ଛିଡ଼ା ହୋଇଗଲେ । 'ଏଟା କ'ଣ ଦେଖନ୍ତୁ ତ'—

'ନିଃସନ୍ଦେହରେ ଜଣେ ମଣିଷ !'

'ଜୀବିତ ନା ମୃତ ? କାହିଁ ହଲଚଲ ହେଉନି ତ ? ବନ୍ଧୁକଟା ବି ହାତରେ ନାହିଁ ! ଲତା ପତ୍ର ଆଢୁଆଳରେ ମୁହଁଟା ବି ଭଲ ଭାବରେ ଦେଖା ଯାଉନି ।'

ଆର୍ଦ୍ଦାଁ କହିଲେ, 'ଚାଲନ୍ତୁ, ପାଖକୁ ଯିବା ।'

ଦୁଇଜଣ ଅଳ୍ପ ଟିକିଏ ଆଗେଇବାରୁ ମ୍ୟାଟସନ ଲୋକଟିକୁ ଚିହ୍ନି ପାରିଲେ, କ୍ୟାପ୍‌ଟେନ ନିକଲ । କ୍ଷୋଭ, ଦୁଃଖ, ରାଗରେ ତାଙ୍କର ଦୁଇ ଆଖିରୁ ଅଗ୍ନିର ସ୍ଫୁଲିଙ୍ଗ ବାହାରିବାକୁ ଲାଗିଲା । ଦାନ୍ତରେ ଦାନ୍ତ ଚାପି ମ୍ୟାଟସନ କହିଲେ, 'ଏ ହେଉଛନ୍ତି କ୍ୟାପ୍‌ଟେନ ନିକଲ, ତାହେଲେ ନିଶ୍ଚୟ ବର୍ବିକେନଙ୍କର ମୃତ୍ୟୁ ହୋଇଛି ।'

'କ୍ୟାପ୍‌ଟେନ ନ - କ - ଲ !' ଆର୍ଦ୍ଦି ଆହ୍ଲାଦରେ ଅସ୍ଫୁଟ ଗଳାରେ ନାମଟା ଉଚ୍ଚାରଣ କଲେ, 'କ୍ୟାପ୍‌ଟେନ୍ ନକଲ !' ଦୁଇଜଣ ନକଲଙ୍କ ନିକଟକୁ ଯାଇ ଦେଖିଲେ, ଗୋଟିଏ ପକ୍ଷୀ ଶାବକ ବିଷାକ୍ତ ମାଙ୍କଡ଼ସା ଜାଲ୍‌ରେ ପଡ଼ି ଛଟପଟ ହେଉଛି ଏବଂ ନକଲ ଆସ୍ତେ ଆସ୍ତେ ଶାବକଟିକୁ ଜାଲରୁ ମୁକ୍ତକରି ଦେଉଛନ୍ତି । ତାଙ୍କର ବନ୍ଧୁକଟା ତାଙ୍କ ଗୋଡ଼ ପାଖରେ ପଡ଼ିଛି । ପକ୍ଷୀ ଶାବକଟିକୁ ଜାଲରୁ ମୁକ୍ତ କରି ଉଡ଼ାଇ ଦେଲେ ନକଲ । ଡେଣା ଫଡ଼ଫଡ଼ କରି ପକ୍ଷୀଟା ଉଡ଼ିଯାଇ ନିକଟସ୍ଥ ଗୋଟାଏ ଗଛର ଡାଳରେ ବସିଲା । ନକଲ କୋମଳ ନୟନରେ ପକ୍ଷୀ ଶାବକଟିକୁ ଚାହିଁ ରହିଲେ । ଆର୍ଦ୍ଦି ଏଇ ଦୃଶ୍ୟ ଦେଖି ଭାବିଲେ, ଯାହାର ମନ ଭିତରେ ଏମିତି ସ୍ନେହର ମନ୍ଦାକିନୀ ବହିଯାଉଛି, ସେ କ'ଣ କେବେ ନିଷ୍ଠୁର ଖୁଣୀ ହୋଇ ପାରନ୍ତି ? ନିକଟକୁ ଯାଇଁ କହିଲେ, 'କ୍ୟାପ୍‌ଟେନ ନକଲ, ଆପଣ ପ୍ରକୃତରେ ଜଣେ ବୀର !'

ନକଲ ସଚକିତ ହୋଇ ତାଙ୍କୁ ଚାହିଁ ବିସ୍ମିତ କଣ୍ଠରେ କହିଲେ, 'ଏକ'ଣ ! ମସିଁୟେ ଆର୍ଦ୍ଦିଯେ ! ଆପଣ ଏଠାରେ କାହିଁକି ?'

'ଆପଣଙ୍କ ସାଙ୍ଗରେ ବନ୍ଧୁତା କରି ଦ୍ୱନ୍ଦ୍ୱଯୁଦ୍ଧ ବନ୍ଦ କରିବାକୁ ଆସିଛୁ କ୍ୟାପ୍‌ଟେନ ନକଲ ! ଏ ଯୁଦ୍ଧରେ ଲାଭ କ'ଣ, ଖାମଖିଆଲି ଅଯଥାରେ ଗୋଟିଏ ଅମୂଲ୍ୟ ଜୀବନ ନଷ୍ଟ ହେବ । ହୁଏତ ଆପଣ ମରିବେ, ନହେଲେ ବର୍ଜିକେନ—'

ଧାଧାଦେଇ କ୍ୟାପ୍‌ଟେନ ନକଲ କହି ଉଠିଲେ, 'କ'ଣ କହୁଛ ? ବର୍ବିକେନ ? ମୁଁ ଦୁଇଘଣ୍ଟା ଧରି ତାଙ୍କୁ ଖୋଜୁଛି । କୌଣସି ଆମେରିକାନ ଯେ ଦ୍ୱନ୍ଦ୍ୱ ଯୁଦ୍ଧର ନିମନ୍ତ୍ରଣ କରି ଏପରି ଭାବରେ ପଳାଇ ଯାଏ, ମୁଁ ସେ କଥା ଜାଣି ନଥିଲି ।'

ମ୍ୟାଟସନ ରାଗିଯାଇ ତୀବ୍ର କଣ୍ଠରେ କହିଲେ, 'ଆମେରିକାନ-ମାନେ କେବେହେଲେ ପଳାନ୍ତି ନାହିଁ । ଭୋର ହେବାର ଅନେକ ପୂର୍ବରୁ ବର୍ବିକେନ ଏ ଆଡ଼କୁ ଆସିଛନ୍ତି ।'

'ତେବେ ଆଉ ଡେରିକରି ଲାଭ କ'ଣ ? କ୍ୟାପ୍‌ଟେନ ନକଲ କହିଲେ, ମୋର ପ୍ରଚୁର କାମ ଅଛି । ଅଯଥା ସମୟ ନଷ୍ଟକରିବାକୁ ଚାହେଁନି, ଚାଲନ୍ତୁ, ତାଙ୍କୁ ଖୋଜି ବାହାର କରିବା । ଏତେ ସାମାନ୍ୟ ଗୋଟିଏ କାମପାଇଁ ସମୟ ନଷ୍ଟ କରିବା ଶୋଭନ ନୁହେଁ ।'

ମାଇକେଲ ଆର୍ଦାଁ କହିଲେ, 'ତରତର ହେଉଛନ୍ତି କାହିଁକି ? ଏତେ ବ୍ୟସ୍ତ ହେଇ ଲାଭ କ'ଣ ? ବର୍ବିକେନ ଯଦି ଜୀବିତଃଥା'ନ୍ତି, ତାହେଲେ ଆମେ ତାଙ୍କର ଦେଖା ନିଶ୍ଚୟ ଏହିଠାରେ ପାଇବା । କିନ୍ତୁ ମୁଁ ଦୃଢ଼ ଭାବରେ କହିପାରେ, ଆପଣ ଦୁଇଜଣଙ୍କର ଦେଖା ହେଲେ ଦ୍ୱନ୍ଦ୍ୱ ଯୁଦ୍ଧ ଆଉ ହୋଇ ପାରିବ ନାହିଁ ।'

'ଉହୁଁ !' କ୍ୟାପ୍‌ଟେନ ନକଲ ମୁଣ୍ଡ ହଲାଇଲେ । ସେକଥା ହେବନି । ଆଜି ଆମମାନଙ୍କ ମଧ୍ୟରୁ ଜଣକୁ ମରିବାକୁ ହେବ । ଆମ ଦୁଇଜଣଙ୍କର ଏକା ସାଙ୍ଗରେ ପୃଥିବୀରେ ବଞ୍ଚିରହିବାର ଅଧିକାର ନାହିଁ ।'

ଏକଥା ଶୁଣି ମ୍ୟାଟସନ କହିଲେ, 'କ୍ୟାପ୍‌ଟେନ ନକଲ ! ମୁଁ ବର୍ବିକେନଙ୍କର ବନ୍ଧୁ, ତାଙ୍କର ଡାହାଣ ହାତ ବୋଲି କହିଲେ ଚଳେ, ଆଜି ଯଦି ଆପଣଙ୍କର କୌଣସି ମଣିଷ ନମାରିଲେ ନଚଳେ, ତେବେ ମୋତେ ଗୁଳି କରନ୍ତୁ । ମୋତେ ମାରିବା ଯାହା

ବର୍ଚ୍ଚିକେନଙ୍କୁ ମାରିବା ସେଇଆ' ଏହା କହି ସେ କ୍ୟାପ୍ଟେନ ନକଲଙ୍କ ମୁଖାମୁଖି ଆସି ଛିଡ଼ା ହେଲେ ।

ନକଲଙ୍କ ଆଖି ଆଗରେ ଯେମିତି କ୍ଷଣକପାଇଁ ଇତିହାସର ଆବର୍ତ୍ତିତ ହେଲା । ସେ ବନ୍ଧୁକ ଟେକିଲେ, ସର୍ବନାଶ ହେବାକୁ ଯାଉଛି ଦେଖି ଦୁଇଜଣଙ୍କ ମଝିରେ ଛିଡ଼ା ହୋଇ ମାଇକେଲ ଆର୍ଦ୍ଦୀ କହିଲେ, 'ଆହା-ହା ! କରୁଛନ୍ତି କ'ଣ ! ମୁଁ ମଣିଷ ମଣିଷଙ୍କ ଭିତରେ ଖୁଣ ଜଖମ ପସନ୍ଦ କରେନ ! କ୍ୟାପ୍ଟେନ ନକଲ୍, ମୁଁ ଆପଣଙ୍କ ନିକଟରେ ଏପରି ଗୋଟିଏ ପ୍ରସ୍ତାବ କରିବି ଯେ ଆପଣଙ୍କର ମରିବାକୁ ବା ମାରିବାକୁ ଇଚ୍ଛା ହେବନ ।'

ଅବିଶ୍ୱାସରେ ବନ୍ଧୁକ ନୁଆଁଇ ଆଣି କ୍ୟାପ୍ଟେନ ନକଲ୍ କହିଲେ, 'ଆପଣଙ୍କର ସେଇ ଲୋଭନୀୟ ପ୍ରସ୍ତାବଟା ଶୁଣିପାରେ କି ?'

'ଟିକେ ପରେ ଜାଣି ପାରିବେ । ବର୍ଚ୍ଚିକେନଙ୍କ ଉପସ୍ଥିତ ବ୍ୟତୀତ ସେକଥା କହିବା ଠିକ୍ ହେବନ ।'

'ବେଶ । ତେବେ ଚାଲନ୍ତୁ, ତାଙ୍କୁ ଖୋଜି ଦେଖିବା ।'

'ଚାଲନ୍ତୁ ।'

ତିନିଜଣ ବର୍ଚ୍ଚିକେନଙ୍କୁ ଖୋଜିବାକୁ ବାହାରିଲେ । କିଛିଦୂର ଯାଇ ନକଲ ହଠାତ୍ ଛିଡ଼ା ହୋଇ ପଡ଼ି ତର୍ଜନୀ ନିର୍ଦ୍ଦେଶ କଲେ, ଦେଖାଗଲା ଗୋଟାଏ ବଡ଼ ଗଛର ଗଣ୍ଡିକୁ ଆଉଜି ବର୍ଚ୍ଚିକେନ ଛିଡ଼ା ହୋଇଛନ୍ତି ।

ବର୍ଚ୍ଚିକେନଙ୍କ ନାମ ଧରି ଡାକ ଡାକ ସେଇ ଅଡ଼କୁ ଆଗେଇ ଚାଲିଲେ ଆର୍ଦ୍ଦୀ, କିନ୍ତୁ କୌଣସି ଜବାବ ନାହିଁ, ବର୍ଚ୍ଚିକେନ ଯେମିତି ଗୋଟିଏ ପଥର ମୂର୍ତ୍ତି । ଆର୍ଦ୍ଦୀ ନିକଟକୁ ଯାଇ ଦେଖିଲେ, ସେ ତନ୍ମୟ ହୋଇ କେତେଗୁଡ଼ିଏ ଜ୍ୟାମିତିକ ନକ୍ସା ଆଙ୍କୁଛନ୍ତି, ଏବଂ ତାଙ୍କ ପାଦ ନିକଟରେ ବନ୍ଧୁକଟା ପଡ଼ିଛି । ଆର୍ଦ୍ଦୀ ତାଙ୍କ କାନ୍ଧରେ ହାତଦେଇ ଡାକିଲେ, 'ମିଷ୍ଟର ବର୍ଚ୍ଚିକେନ !'

ଚମକି ଉଠିଲେ ବର୍ବିକେନ । 'ଏକଣ ! ମସିଁୟେ ଆର୍ଦାଁ ! —ଇୟୁରେକା ! ମୁଁ ଉପାୟ ବାହାର କରି ପାରିଛି । ଆଉ କୌଣସି ଭାବନା ନାହିଁ ।

'କି ଉପାୟ ?'

'ସେଇଟାର ?'

'କେଉଁଟାର ?'

'ଗୋଳାଟା ଯେତେବେଳେ କମାଣ ମୁହଁରୁ ଛୁଟିକି ବାହାରିବ, ସେତେବେଳେ ଯେମିତି କୌଣସି ଧକ୍କା ନଲାଗେ ତାର ଉପାୟ ବାହାର କରି ପାରିଛି ।'

ଖୁସି ହୋଇ ଆର୍ଦାଁ ପଚାରିଲେ, 'ସତେ ?'

ମୃଦୁହସି ବର୍ବିକେନ କହିଲେ, 'ସେ ଆଉ ବେଶୀ କ'ଣ ? ପାଣିକୁ ସ୍ପ୍ରିଂର କାମରେ ଲଗାଇଲେ ହେଲା । ତାରି ଉପରେ ରହିବ ବସିବା ଆସନ । ଆରେ ! ମ୍ୟାଟସନ ଯେ ? ଘଟଣା କ'ଣ ?'

ଆର୍ଦାଁ ବର୍ବିକେନଙ୍କ ହାତଧରି କହିଲେ, 'ସେଇ ଗଛଟା ପାଖରେ କ୍ୟାପ୍‌ଟେନ ନିକଲ୍ ବି ଅଛନ୍ତି । ଚାଲନ୍ତୁ ତାଙ୍କ ସାଙ୍ଗରେ ପରିଚୟ କରେଇ ଦିଏ ।'

ବର୍ବିକେନଙ୍କ କପାଳର ଶିରାଗୁଡ଼ିକ ଫୁଲି ଉଠିଲା । ଗାଲ ଲାଲ ହୋଇ ଉଠିଲା । ଲଜ୍ଜିତ କଣ୍ଠରେ କହିଲେ, 'କି ଲଜ୍ଜା ! କଥା ରଖି ପାରିବ ।' କ୍ୟାପ୍‌ଟେନ ନିକଲଙ୍କୁ ଆଗେଇବାର ଦେଖି ଚିତ୍କାର କରି କହିଲେ, 'କ୍ୟାପ୍‌ଟେନ ନିକଲ ! କ୍ଷମା କରିବେ ! ମୋ ଦୋଷରୁ ଆପଣଙ୍କର ପ୍ରଚୁର ସମୟ ନଷ୍ଟ ହୋଇ ଯାଇଛି । ଚନ୍ଦ୍ରକୁ ଗୋଳା ପଠାଇବାର କଥା ଭାବି ଭାବି ଦ୍ୱନ୍ଦ୍ୱ ଯୁଦ୍ଧର କଥା ମୁଁ ଏକାବେଳକେ ଭୁଲି ଯାଇଥିଲି । ଚାଲନ୍ତୁ ମୁଁ ବର୍ତ୍ତମାନ ପ୍ରସ୍ତୁତ ।' ବର୍ବିକେନ ତାଙ୍କର ବନ୍ଧୁକଟା ଉଠାଇ ନେଲେ ।

ମାଇକେଲ ଆଁଦ୍ରେଁ ବାଧାଦେଇ କହିଲେ, 'ଉଁ ହୁଁ ! ସେଟା ହେବନି । ପୃଥିବୀର ଭାଗ୍ୟ ଭଲ ଯେ ଲଢ଼ାଇଟା ଆଗରୁ ଶେଷ ହୋଇ ଯାଇନି । ଆପଣ ଦୁଇଜଣ ପ୍ରତିଭାବାନ୍, କୌଣସି ସାଧାରଣ ସ୍ତରର ମଣିଷ ନୁହଁନ୍ତି । ପ୍ରତିଭାକୁ ହତ୍ୟା କରିବାକୁ କ'ଣ ଆପଣମାନଙ୍କର ଜନ୍ମ ହୋଇଛି ?'

ବର୍ବିକେନ ଓ ନିକଲ ନୀରବରେ ମୁଣ୍ଡ ତଳକୁ କରି ଲଜ୍ଜିତ ଭଙ୍ଗୀରେ ଛିଡ଼ାହୋଇ ରହିଲେ । ଆଁଦ୍ରେଁ ପୁଣି କହିଲେ, 'ମୁଁ ଭଲ ଭାବରେ ବୁଝି ପାରିଛି ଯେ, ଆପଣ ଦୁଇଜଣ ଗୋଟାଏ ମାମୁଲି ଭୁଲ ପଛରେ ଘୂରି ବୁଲୁଛନ୍ତି । ସେଇ ଭୁଲଟାକୁ ଯେତେ ବଡ଼ କରି ଦେଖୁଛନ୍ତି, ଆପଣମାନେ ସେତେ ରାଗି ଉଠୁଛନ୍ତି । ବର୍ବିକେନଙ୍କର ଦୃଢ଼ବିଶ୍ୱାସ ତାଙ୍କର ଗୋଳା ନିଶ୍ଚୟ ଚନ୍ଦ୍ରରେ ପହଞ୍ଚିବ ଏବଂ ନିକଲ ଭାବୁଛନ୍ତି ଏହା ହୋଇ ପାରେନା ।'

ନିକଲ କହିଲେ, 'ଠିକ୍ । ଗୋଳାଟା କ'ଣ କେବେ ଚନ୍ଦ୍ରରେ ପହଞ୍ଚି ପାରେ ?'

ବର୍ବିକେନ କହିଲେ, 'ପାରେନା ମାନେ ? ନିଶ୍ଚୟ ପାରେ ।'

ମାଇକେଲ ଆଁଦ୍ରେଁ କହିଲେ, 'ବେଶ ତ, ତାହେଲେ ଆପଣ ଦୁଇଜଣ ମୋ ସାଙ୍ଗରେ ଚନ୍ଦ୍ରକୁ ଚାଲନ୍ତୁ ନାହାନ୍ତି କାହିଁକି ? ଗୋଳାଟା ଚନ୍ଦ୍ରରେ ପହଞ୍ଚି ପାରିବ କି ନା, ତାହା ସ୍ୱଚକ୍ଷୁରେ ଦେଖି ସମସ୍ତ ବିବାଦ ଭଞ୍ଜନ କରି ପାରନ୍ତେ ।'

ବର୍ବିକେନ ଓ ନିକଲ ତତ୍‌କ୍ଷଣାତ୍ ଏକ ସାଙ୍ଗରେ କହି ଉଠିଲେ, 'ମୁଁ ରାଜି ଅଛି ।'

ତାଙ୍କ ଦୁଇଜଣଙ୍କର ଦ୍ୱନ୍ଦ୍ୱ ଯୁଦ୍ଧ ଅଉ ଶେଷ ହୋଇ ପାରିଲା ନାହିଁ ।

ସେପର୍ଯ୍ୟନ୍ତ ବିନ୍ଦୁ ଲୋକ ବିଶ୍ୱାସ କରି ପାରୁ ନଥିଲେ, ଗୋଲା ଭିତରେ ସତରେ ମଣିଷ ଯିବା ସମ୍ଭବ ହେବ କି ନାହିଁ । ସକଳ ସନ୍ଦେହର ଅବସାନ କରିବା ପାଇଁ ବର୍ବିକେନ ଗୋଟିଏ ବତିଶ ଇଞ୍ଚ କମାଣ ଆଣିଲେ । ଗୋଟିଏ ଫମ୍ପା ଗୋଲା ତିଆରି କରି ତା ଭିତରେ ସ୍ପ୍ରିଂର ଗଦି ଦେଇ ସଜ୍ଜିତ କରା ହେଲା । ତାପରେ ଗୋଲା ଭିତରେ ଗୋଟିଏ ଜିଅନ୍ତା ବିଲେଇ ଓ ଗୋଟିଏ ଝିଙ୍କ ପକ୍ଷୀ ରଖି ଢାଙ୍କୁଣିଟା ସ୍କ୍ରୁ ଦ୍ୱାରା ବନ୍ଦ କରା ହେଲା । କମାଣରେ ଦୁଇମହଣ ବାରୁଦ ଭର୍ତ୍ତି କରି ଗୋଲାଟାକୁ ଶୂନ୍ୟକୁ ନିକ୍ଷେପ କରିବାକୁ କୌଣସି ଅସୁବିଧା ହେଲା ନାହିଁ । ଗୋଲାଟା ଏକହଜାର ଫୁଟ ଉପରକୁ ଉଠି ତୀର୍ଯ୍ୟକ ଭାବରେ ମାଟିରେ ପଡ଼ିଲା । ତାକୁ ଉଠାଇ ଆଣି ଖୋଲି ଦେଖାଗଲା, ବିଲେଇଟା ଅଳ୍ପ ଆହତ ହୋଇଛି ସତ, କିନ୍ତୁ ଗୋଲା ଭିତରେ ବସି ସେ ଝିଙ୍କଟାକୁ ଖାଇ ଦେଇଛି ।

ପରୀକ୍ଷା ଫଳ ଦେଖି ସମସ୍ତେ ଖୁବ୍ ଖୁସୀ ହେଲେ । ମ୍ୟାଟସନ ବାରମ୍ବାର କହିଲେ, 'ଆପଣମାନେ ମୋତେ ସାଙ୍ଗରେ ନିଅନ୍ତୁ, ମୁଁ ବି ଚନ୍ଦ୍ରକୁ ଯିବି ।' ବର୍ବିକେନ ମୁଣ୍ଡ ହଲାଇ କହିଲେ, 'ସେ କଥା କେମିତି ହେବ ମ୍ୟାଟସନ ? ଏତେ ଜାଗା ଆମେ ପାଇବୁ କେଉଁଠୁ ? ମ୍ୟାଟସନ ଦୁଃଖରେ ଭାଙ୍ଗିପଡ଼ି ତାଙ୍କୁ ସାଙ୍ଗରେ ନେବାକୁ

ନଗ୍ଷ୍ଟେଡ଼୍ଵଣ୍ଡା ଭଳି ବାରମ୍ବାର ଆର୍ଡ଼ିଙ୍କୁ ଅନୁରୋଧ କରିବାକୁ ଲାଗିଲେ ।

ମାଇକେଲ୍ ଆର୍ଡ଼ି ପୁଣି ଏକ ବିପଦରେ ପଡ଼ିଲେ । ଚନ୍ଦ୍ରକୁ ଯିବା ପାଇଁ ଆଗ୍ରହ ପ୍ରକାଶ କରି ଏତେ ଲୋକ ତାଙ୍କ ସାଙ୍ଗରେ ଦେଖା କରିବାକୁ ଲାଗିଲେ ଯେ ସେ ସବୁମତ ବିରକ୍ତ ହୋଇଗଲେ । ଦିନେ ତ ଅନେକଗୁଡ଼ିଏ ଲୋକ ଆସି କହିଲେ, 'ଆମେ ଚନ୍ଦ୍ରର ମଣିଷ । ସ୍ୱଦେଶକୁ ଫେରିଯିବାକୁ ମନ ବଡ଼ ଉଚ୍ଛନ୍ନ ହେଉଛି । ଅନେକଦିନ ହେଲା ସେଠାରୁ ଆସିଛୁ କି ନା !' ଆର୍ଡ଼ି ଅଳ୍ପଟିକେ ହସି ସେମାନଙ୍କୁ କହିଲେ, 'ଦେଖନ୍ତୁ ଗୋଲାରେ ଏଥର ଜାଗା ଖୁବ୍ କମ୍, ସୁତରାଂ ସେ ବିଷୟରେ ଆପଣମାନଙ୍କୁ କୌଣସି ସାହାଯ୍ୟ କରି ପାରିବି ନାହିଁ । ତେବେ ଚନ୍ଦ୍ରରେ ପହଞ୍ଚି ଆପଣମାନଙ୍କୁ ନେଇଯିବାର ବ୍ୟବସ୍ଥା କରିବି ।'

ଯେଉଁମାନେ ମାଇକେଲ୍ ଆର୍ଡ଼ିଙ୍କର ଦେଖା ପାଇଲେ ନାହିଁ, ସେମାନେ ଚିଠି ଲେଖିବାକୁ ଆରମ୍ଭ କରିଦେଲେ । ପ୍ରତିଦିନ ଏତେ ଚିଠି ଆସିଲା ଯେ ଡାକଘରର ଲୋକମାନେ ମଧ୍ୟ ବିରକ୍ତ ହୋଇଗଲେ । ଆର୍ଡ଼ି ଏତେ ଚିଠି ପଢ଼ିବାର ସମୟ ବି ପାଇଲେ ନାହିଁ, ଜବାବ ଦେବା ତ ଦୂରର କଥା । ଚନ୍ଦ୍ରକୁ ଯିବା ଉପସର୍ଗ ହିସାବରେ ଏମିତି ସବୁ ଉପସର୍ଗ ଯେ ଦେଖାଦେବ, ସେକଥା ସେ ଭୁଲରେ ବି କଳ୍ପନା କରି ପାରି ନଥିଲେ ।

ତାପରେ ଆସିଲା ନଭେମ୍ବର ଦଶତାରିଖ, ସେଇ ବହୁ ପ୍ରତୀକ୍ଷିତ ଦିନ । ଯେଉଁ କମ୍ପାନୀ ଗୋଲାଟା ତିଆରି କରିବାର ଭାର ନେଇଥିଲା, ସେମାନେ ତିଆରି ହୋଇ ଯାଇଥିବା ଗୋଲାଟା ବର୍ବିକେନଙ୍କ ପାଖରେ ପହଞ୍ଚାଇ ଦେଲେ । ଯେମିତି ଗୋଲାଟା ତିଆରି ହୋଇ ଯାଇଛି ବୋଲି ଖବର କାଗଜରେ ବାହାରି ପଡ଼ିଲା, ହଜାର ହଜାର ଲୋକ ଗୋଲାଟା ଦେଖିବାକୁ ଛୁଟିଲେ । ସମସ୍ତେ

ଯେମିତ ଭଲ ଭାବରେ ଦେଖି ପାରିବେ ସେଥିପାଇଁ ବର୍ବିକେନ ଗୋଲାଟାକୁ ଗୋଟାଏ ଖୋଲା ପଡିଆରେ ରଖିଥିଲେ, ତଥାପି ବି ସ୍ଥାନାଭାବ ହେଲା । ଲୋକ ଭିଡ଼ ଓ ଚିତ୍କାରରେ ସମସ୍ତେ ଉତ୍ତେଜିତ ହୋଇ ପଡ଼ିଲେ । କେତେ ଆଉ ସମ୍ଭାଳିବେ ଏ ବିପଦ ! ଆର୍ଡାଁ ଗୋଲାଟାକୁ ଦେଖି ଖୁସି ହେଲେ ବି, ଥଟ୍ଟା କରି କହିଲେ, 'ଏ କ'ଣ ତିଆରି କରିଛନ୍ତି, ବର୍ବିକେନ ? ଗୋଲାଟା ଦେଖିବାକୁ ମୋଟେ ତ ସୁନ୍ଦର ନୁହେଁ ! ଏମିତି ଗୋଟାଏ ଅସୁନ୍ଦର ଗୋଲା ଦେଖି ଚନ୍ଦ୍ରର ଅଧିବାସୀମାନେ ହସିବେ !'

ବର୍ବିକେନ ହସି ହସି କହିଲେ, 'ବାହାର ଚକ୍ ଚକ୍ ନେଇ କରିବେ କ'ଣ ? ଭିତରଟା ଆପଣଙ୍କ ଇଚ୍ଛାନୁସାରେ ସୁନ୍ଦର କରି ନିଅନ୍ତୁ ।' ଆର୍ଡାଁ ଉତ୍ତର ନକରି ସେଥିରେ ରାଜି ହୋଇଗଲେ ।

ବର୍ବିକେନ ମନେ ମନେ ବୁଝି ପାରିଥିଲେ, ଲୁହାର ସ୍ପ୍ରିଂ ହଜାର ଭଲ ହେଲେ ବି ସେଥିରେ କାମ ଚଳିବ ନାହିଁ । ତେଣୁ ସେ ପାଣିର ବ୍ୟବସ୍ଥା କରିଥିଲେ । ଗୋଲା ଭିତରେ ତିନିଫୁଟ ପାଣି ଭର୍ତ୍ତିକରା ହେଲା, ସେଇ ଜଳ ଉପରେ ଗୋଟିଏ କାଠର ଚକ୍ତି ରଖାଗଲା । ଚକ୍ତିଟା ଗୋଲା ଦେହରେ ଏପରି ଭାବରେ ଲଗାଗଲା ଯେମିତି ଇଚ୍ଛାଅନୁସାରେ ଖୋଲିଯାଇ ପାରିବ । ଏଇ ଚକ୍ତିଟା ଉପରେ ବର୍ବିକେନ ଯାତ୍ରୀମାନଙ୍କର ବସିବାର ବ୍ୟବସ୍ଥା କଲେ । ପାଣିକୁ କେତୋଟି ସ୍ତରରେ ବିଭକ୍ତ କରିବା ପାଇଁ ପାଣି ଭିତରେ ପର ପର କେତୋଟି କାଠର ଚକ୍ତି ରଖାହେଲା । ସବୁଠାରୁ ଉପରେ ରହିଲା ଯାତ୍ରୀମାନଙ୍କର ବସିବାର ଚଟି ଏବଂ ତାପର ସ୍ତରରେ ରହିଲା ଖୁବ ମଜବୁତ୍ ସ୍ପ୍ରିଂ ।

ବର୍ବିକେନ ଅନୁମାନ କରିଥିଲେ ଯେ, କମାଣ ମୁହଁରୁ ଗୋଲାଟା ଛୁଟିକି ବାହାରିବା ସଙ୍ଗେ ସଙ୍ଗେ ଯେଉଁ ସାଂଘାତିକ ଧକ୍କା ଲାଗିବ ସେଥିରେ କାଠର ଚକ୍ତିଗୁଡ଼ିକ ଗୋଟି ଗୋଟି ହୋଇ ଭାଙ୍ଗିଯାଇ

ଗୋଟିଏ ଥାକର ପାଣି ଅନ୍ୟ ଥାକ ପାଣି ସହିତ ମିଶିଯିବ, ସୁତରାଂ ଯାତ୍ରୀମାନଙ୍କର କୌଣସି ଧକ୍କା ସହ୍ୟ କରିବାକୁ ହେବନି। ଗୋଳା କ୍ଷେପଣ କଲେ ପ୍ରଥମେ ଅଗରେ, ତାପରେ ପଛ ପଟରେ ଧକ୍କା ଲାଗିବାର କଥା। ପାଣିର ଏଇ ଅଭୁତ ଷ୍ଟ୍ରିଂ ରହୁଥିବାରୁ ଅଗପଟରେ ଧକ୍କା ଯେ ଲାଗିପାରିବ ନାହିଁ, ବର୍ବିକେନ ତାହା ଭଲ ଭାବରେ ବୁଝି ପାରିଥିଲେ। ପଛପଟର ଧକ୍କାରେ ଯେପରି କଷ୍ଟ ନହୁଏ ସେଥିପାଇଁ ଖୁବ୍ ଉତ୍କୃଷ୍ଟ ଧରଣର ଲୁହାର ଷ୍ଟ୍ରିଂ ଉପରେ ନିର୍ଭର କରିବାକୁ ହେଲା। ଗୋଳା ଭିତରଟା ପାଣ୍ଠାର ଷ୍ଟ୍ରିଂ ପରି ନରମ ଅଥଚ ସହଜରେ ଯେପରି ନଛୁଟେ ଏହି ଧରଣର ଷ୍ଟ୍ରିଂ ଉପରେ ଖୁବ୍ ମୋଟା ଗଦି ଲଗାଇ ଯୋଡ଼ି ଦିଆ ହୋଇଥିଲା।

ଏତେଗୁଡ଼ିଏ ଆୟୋଜନ ଦେଖି ମାଇକେଲ୍ ଆର୍ଦାଁ କହିଲେ 'ଏତେ ପ୍ରକାର ବ୍ୟବସ୍ଥା କରି ଯଦି ଧକ୍କା ଲାଗି ହାଡ଼ଗୋଡ଼ ଭାଙ୍ଗେ, ତାହେଲେ ଭାଙ୍ଗୁ, ମୋର କୌଣସି ଆପତ୍ତି ନାହିଁ।'

ଗୋଳା ଭିତରକୁ ଯିବାର ଦରଜା ତିଆରି ହୋଇଗଲା ଏକ ସୂକ୍ଷ୍ମମାନ ହିଙ୍ଗୁଦିଗରେ। ଭିତରପଟୁ ଦ୍ୱାର ଯେପରି ଖୁବ ଭଲ ଭାବରେ ବନ୍ଦ କରି ଯାଇପାରେ, ବର୍ବିକେନ ଅତ୍ୟନ୍ତ ମନଯୋଗ ଦେଇ ସେ ବ୍ୟବସ୍ଥା କରିଥିଲେ। ହଠାତ୍ କୌଣସି ଧକ୍କା ଲାଗିଲେ ଯେପରି ଦରଜା ଖୋଲି ନଯାଏ ସେଥିପାଇଁ ବୈଦ୍ୟୁତିକ ବୋତାମର ବ୍ୟବସ୍ଥା କରି ହେଲା।

ଗୋଳା ଭିତରେ ରହି କେବଳ ଚନ୍ଦ୍ରକୁ ଗଲେ ତ ହେବନି, ଯିବା ବାଟରେ ମହାଶୂନ୍ୟର ଅବସ୍ଥା ପର୍ଯ୍ୟବେକ୍ଷଣ କରିବାକୁ ହେବ। ନହେଲେ ଚନ୍ଦ୍ରକୁ ଯାଇ ଲାଭ କ'ଣ? ସେଥିପାଇଁ ଷ୍ଟ୍ରିଂ କୁଶନ ତଳେ ଗୋଟିଏ କାଚର ଝରକା କରି ହୋଇଥିଲା। ଦୁଇଟି ଝରକା ଦୁଇ ପାଖରେ, ଗୋଟିଏ ଉପରେ ଓ ଅନ୍ୟଟି ତଳେ। ଏ ଝରକାଗୁଡ଼ିକ ଦ୍ୱାରା ମହାକାଶରେ ଯାତ୍ରା କରିବା ସମସ୍ତରେ

ଘୁଞ୍ଚି ଆସୁଥିବା ପୃଥିବୀ, ଜମନକ୍ଷତ୍ରମାନ ଚନ୍ଦ୍ରଲୋକ ଏବଂ ଉଜ୍ଜ୍ୱଳ ନକ୍ଷତ୍ର-ଖଚିତ ଅସୀମ ଜ୍ୟୋତିଷ୍କଲୋକ ପର୍ଯ୍ୟବେକ୍ଷଣ କରିବାର କୌଣସି ଅସୁବିଧା ନଥିଲା । ଏଇ କାଚଗୁଡ଼ିକ ଯେପରି ବାୟୁ ଘ୍ୟପରେ ଭାଙ୍ଗି ନଯାଏ, ସେଥିପାଇଁ ଧାତୁର ଆବରଣ ଦେଇ ସେଗୁଡ଼ିକ ଢାଙ୍କି ରଖିବାର ଏପରି ବ୍ୟବସ୍ଥା ହୋଇଥିଲା ଯେ ମାତ୍ର କେତୋଟି ସ୍କ୍ରୁ ଖୋଲିଦେଲେ ଝରକାର କାଚ ଉପରୁ ସେଇ ଆବରଣ ଖୋଲି ଯାଉଥିଲା ।

ଗୋଳାରେ ଯେପରି ଆଲୋକ ଓ ତାପର ଅଭାବ ନହୁଏ ସେଥିପାଇଁ ଖୁବ୍ ବେଶୀ ଗ୍ୟାସ ନଆଗଲା । ଗୋଟିଏ ନଳର ମୁଖ ଖୋଲିଦେଲେ ଗ୍ୟାସ ବାହାରୁଥିଲା । ବର୍ବିକେନ ଏକ ସପ୍ତାହ ଉପଯୋଗୀ ଖାଦ୍ୟ, ପାନୀୟ ଏବଂ ଗ୍ୟାସ ସାଙ୍ଗରେ ନେଲେ ; କୌଣସି ପ୍ରକାର ବଞ୍ଚିରହିବା ପାଇଁ ଯାହା ଆବଶ୍ୟକ, କେବଳ ସେଇ ସବୁ ଯେ ଗୋଳାରେ ନିଆଗଲା ଏକଥା ନୁହେଁ, ଯେମିତି ଖୁବ ଆରାମରେ ରହିହେବ ସେଥିପାଇଁ ମଧ୍ୟ ବ୍ୟବସ୍ଥା କରାହେଲା । ଗୋଳାରେ ଯଦି ପ୍ରଚୁର ଜାଗା ଥାନ୍ତା ତାହେଲେ ମାଇକେଲ୍ ଆର୍ଡାଁ ନିଶ୍ଚୟ ପୃଥିବୀର ଯାବତୀୟ ସୁନ୍ଦର ଶିଳ୍ପର ଗୋଟିଏ ମ୍ୟୁଜିୟମ ନିଜ ସାଙ୍ଗରେ ନେଇ ଯାଇଥାନ୍ତେ ।

ଖାଦ୍ୟ, ପାନୀୟ, ଆଲୋକ ଇତ୍ୟାଦିର ବ୍ୟବସ୍ଥା ଯେତେବେଳେ ଶେଷ ହେଲା, ତାପରେ ବାୟୁ ବିଷୟ ଭାବିବାର କଥା । ଗୋଳା ଭିତରେ ଯେଉଁ ଟିକିଏ ସ୍ୱାଭାବିକ ବାୟୁ ଥିଲା, ସେତିକ ଯେ ତିନିଜଣଙ୍କ ପକ୍ଷରେ ଶ୍ୱାସକ୍ରିୟାର ଉପଯୋଗୀ ଥିଲା, ସେକଥା ନିଶ୍ଚୟ କହିହେଲେ ନ ଚଳିବ । ବର୍ବିକେନଙ୍କ ସାଙ୍ଗରେ ପୁଣି ଯାଉଥିଲା ତାଙ୍କର ପ୍ରିୟ କୁକୁରଟି । ସୁତରାଂ ପାଞ୍ଚୋଟି ପ୍ରାଣୀଙ୍କ ପାଇଁ ଚବିଶ ଘଣ୍ଟାରେ ନ୍ୟୂନପକ୍ଷେ ସାଢ଼େ ତିନିସେର ହିସାବରେ ଅମ୍ଳଜାନ ଦରକାର । ଏକୋଇଶ ଭାଗ ଅମ୍ଳଜାନ ଓ ଅଣାଅଶୀ ଭାଗ ଏଜୋଟ ମିଶାଇଲେ

ବାୟୁର ଜନ୍ମ ହୁଏ । ଆମେ ଯେତେବେଳେ ନିଶ୍ୱାସ ନେଉଁ ସେତେବେଳେ ଅମ୍ଳଜାନ ଶରୀର ମଧ୍ୟକୁ ପ୍ରବେଶ କରେ ଏବଂ ପ୍ରଶ୍ୱାସରେ ଏଜୋଟ ବାହାରିଯାଏ । ବନ୍ଦ ସ୍ଥାନରେ କିଛି ସମୟ ଶ୍ୱାସକ୍ରିୟା ଚାଲିଲେ ବାୟୁମଧ୍ୟରେ ଥିବା ଅମ୍ଳଜାନ ନିଃଶେଷ ହୋଇ ଯାଇ କେବଳ କାର୍ବୋନିକ ଏସିଡ଼ର ଗ୍ୟାସ ରହେ । କାର୍ବୋନିକ ଏସିଡ଼ ମନୁଷ୍ୟ ପକ୍ଷରେ ମାରାତ୍ମକ ବିଷ । ବର୍ବିକେନ ଚନ୍ଦ୍ରାକର ଦେଖିଲେ, ଗୋଲା ଭିତରେ ଯେତିକି ପରିମାଣରେ ଅମ୍ଳଜାନ ଆବଶ୍ୟକ ହେବ ତାହା ତିଆରି କରି ପରେ ଜମିଯାଇଥିବା କାର୍ବନିକ ଏସିଡ଼ର ଗ୍ୟାସ ବି ନଷ୍ଟ କରି ପାରିଲେ ଗୋଳାରେ ଆଉ ବାୟୁର ଅଭାବ ରହିବ ନାହିଁ ।

ଅନେକ ପରୀକ୍ଷା ନିରୀକ୍ଷାରେ ଦେଖାଗଲା ଯେ, କ୍ଳୋରେଟ ଅଫ୍ ପଟାସ ଏବଂ କଷ୍ଟିକ ପଟାସ ବ୍ୟବହାର କଲେ ଏଇ ଉଦ୍ଦେଶ୍ୟ ସିଦ୍ଧି ହେବ । ଚାରିଶହ ଡିଗ୍ରୀ ଉତ୍ତାପରେ କ୍ଳୋରେଟ ଅଫ୍ ପଟାସ କ୍ଳୋରିନ ଅଫ୍ ପଟାସିୟମରେ ରୂପାନ୍ତରିତ ହୁଏ ଏବଂ ସେଥିରେ ଯେଉଁ ଅମ୍ଳଜାନ ଥାଏ ତାହା ବାହାରି ପଡ଼େ । ନ'ସେର କ୍ଳୋରେଟ ଅଫ୍ ପଟାସରୁ ସାଢେ ତିନିସେର ଅମ୍ଳଜାନ ମିଳେ । ଚବିଶ ଘଣ୍ଟା ପାଇଁ ଜଣେ ଲୋକ ପକ୍ଷରେ ସାଢେ ତିନିସେର ଅମ୍ଳଜାନ ଯଥେଷ୍ଟ । ବାୟୁରେ ଯେଉଁ କାର୍ବୋନିକ ଏସିଡ଼ ଥାଏ କ୍ଳୋରେଟ ଅଫ ପଟାସ ତାହା ସବୁସମୟରେ ଟାଣିନିଏ । ସୁତରାଂ ଖୁବ ବେଶୀକରି କ୍ଳୋରେଟ ଅଫ୍ ପଟାସ ଏବଂ କଷ୍ଟିକ ପଟାସ ନେବା ପାଇଁ ବ୍ୟବସ୍ଥା କରାହେଲା ।

ମ୍ୟାଟସନ କହିଲେ, 'ସବୁଠିଁ ବିଜ୍ଞାନ କହୁଛି ଯେ ଏହାପରେ ଗୋଳାର ଆଉ ବାୟୁର ଅଭାବ ରହିବ ନାହିଁ, ତଥାପି ଥରେ ଭଲ ଭାବରେ ପରୀକ୍ଷାକରି ଦେଖି ନେଲେ ଭଲ ହୁଅନ୍ତା ନାହିଁ ?'

ସମସ୍ତେ ଏ ପ୍ରସ୍ତାବକୁ ସମର୍ଥନ କଲେ । କହିଲେ, 'ନିଶ୍ଚୟ

ନିଶ୍ଚୟ ।’ ଏକଥା ଠିକ୍ ଥରେ ପରୀକ୍ଷା କରି ଦେଖିବା ନିଃସନ୍ଦେହରେ ଭଲ ।’

ଏକ ସପ୍ତାହ ଉପଯୋଗୀ ଖାଦ୍ୟ, ପାନୀୟ ଏବଂ ଯଥେଷ୍ଟ ପରିମାଣରେ କ୍ଲୋରେଟ୍ ଅଫ୍ ପଟାସ ଏବଂ କଷ୍ଟିକ ପଟାସ ଦେଇ ମ୍ୟାଟସନଙ୍କୁ ଗୋଲା ଭିତରେ ବନ୍ଦକରି ରଖା ହେଲା । ସାତଦିନ ପରେ ସମସ୍ତେ ଖୁସି ହୋଇ ଦେଖିଲେ, ମ୍ୟାଟସନ ଅତୁଟ ସ୍ୱାସ୍ଥ୍ୟ ଓ ଆନନ୍ଦୋତ୍ଫୁଲ୍ଲ ଚିତ୍ତରେ ଗୋଲା ଭିତରେ ଅଛନ୍ତି । ବର୍ବିକେନ ଅବଶ୍ୟ ପୁରାପୁରି ନିଃସନ୍ଦେହ ହେବା ପାଇଁ ମ୍ୟାଟସନଙ୍କୁ ଓଜନ କରାଇଲେ । ସମସ୍ତେ ବିସ୍ମୟର ସହିତ ଦେଖିଲେ ଯେ ମ୍ୟାଟସନଙ୍କର ଓଜନ ପୂର୍ବାପେକ୍ଷା ଅନେକ ବଢ଼ି ଯାଇଛି ।

ଚନ୍ଦ୍ରକୁ ଲକ୍ଷ୍ୟକରି ଗୋଲାଟା ଫାଏର କରିବା ପରେ ଯେପରି ପୃଥିବୀରୁ ତାର ଗତି ପର୍ଯ୍ୟବେକ୍ଷଣ କରିହୁଏ, ପ୍ରଥମରୁ ବୈଜ୍ଞାନିକମାନେ ସେଇ ଚେଷ୍ଟା କରୁଥିଲେ । ଚନ୍ଦ୍ର ଯଦି ଅଢ଼େଇଲକ୍ଷମାଇଲ ଦୂରରେ ଥାନ୍ତା, ତାହେଲେ ଖାଲି ଆଖିକୁ ଚନ୍ଦ୍ର ଯେମିତି ଦେଖାଯାନ୍ତା, ସେତେବେଳେକାର ଦୂରବୀକ୍ଷଣ ଦେଇ ତାଠାରୁ ବେଶୀ ସ୍ପଷ୍ଟ ଦେଖିବାର ସମ୍ଭାବନା ନଥିଲା । ଚନ୍ଦ୍ରର ତୁଳନାରେ କମାଣର ଗୋଲା ତ ଅତ୍ୟନ୍ତ କ୍ଷୁଦ୍ର, ଗ୍ରେଟ୍ ଗୋଟିଏ ବିନ୍ଦୁ । ସେଇ ବିନ୍ଦୁ ତୀବ୍ର ଗତିରେ ମହାକାଶରେ ଛୁଟି ଚାଲିଛି—ଏ ଦୃଶ୍ୟ ଦେଖିବାକୁ ହେଲେ ଦୂରବୀକ୍ଷଣକୁ ଆହୁରି ଶକ୍ତିଶାଳୀ କରିବାକୁ ହେବ । ବୈଜ୍ଞାନିକମାନେ ଏଥିପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । ଏଥି ପୂର୍ବରୁ ଯେଉଁ ଯନ୍ତ୍ରରେ କୌଣସି ବସ୍ତୁକୁ ଛ'ହଜାର ଗୁଣ ବଢ଼ାଇ ଦେବାକୁ ପ୍ରଚେଷ୍ଟା କରାଯାଉଥିଲା । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ବିଖ୍ୟାତ ମାନମନ୍ଦିରର ବୈଜ୍ଞାନିକମାନେ ଯେଉଁ ଦୂରବୀକ୍ଷଣ ତିଆରି କଲେ, ତାର ନଳୀଟି ବି ଦୁଇଶହ ଫୁଟ ଲମ୍ବ ହେଲା । ନଳୀ ଭିତରେ ଜିନିଷଗୁଡ଼ିକ ଦେଖିବା ପାଇଁ ଯେଉଁ କାଚ ଲଗା ହେଲା ତାର ବ୍ୟାସ ହେଲା ଷୋଳ ଫୁଟ ।

ଚନ୍ଦ୍ରାଲୋକ ବାୟୁସ୍ତର ଭେଦକରି ପୃଥିବୀକୁ ଆସୁ ଆସୁ ଚନ୍ଦ୍ରାଲୋକ ତାର ଔଜ୍ଜ୍ୱଲ୍ୟ, ଅନେକ ପରିମାଣରେ ହରାଇ ଥାଏ ।

ସୁତରାଂ ଦୂରବୀକ୍ଷଣ ଯେତେ ଉଚ୍ଚରେ ବସାଯାଇ ପାରିବ, ଚନ୍ଦ୍ରର ଆଲୋକକୁ ଉଚ୍ଚତା ଭିତରେ ଥିବା ସେହି ବାୟୁସ୍ତରକୁ ଆଉ ଭେଦ କରିବାକୁ ହେବନାହିଁ, ସୁତରାଂ ଠିକ୍ ହେଲା ଯେ କେମ୍ବ୍ରିଜବିଶ୍ୱ-ବିଦ୍ୟାଳୟର କର୍ତ୍ତୃପକ୍ଷ ଯେଉଁ ବିରାଟକାୟ ନୂତନ ଦୂରବୀକ୍ଷଣ ତିଆରି କରିଛନ୍ତି ତାହାକୁ କୌଣସି ଏକ ଉଚ୍ଚ ପାହାଡ଼ର ଉଚ୍ଚତମ ଶିଖରରେ ବସାଇବାକୁ ହେବ । ଅନେକ ତର୍କ ବିତର୍କ ଓ ଗବେଷଣା ପରେ ଠିକ୍ ହେଲା, ଯୁକ୍ତରାଷ୍ଟ୍ରର ପର୍ବତମାଳାର ଚୂଡ଼ା ଉପରେ ଏଇ ଦୂରବୀକ୍ଷଣ ବସାଇଲେ ସୁବିଧା ହେବ । ସମୁଦ୍ର ପତନଠାରୁ ସେଇ ଚୂଡ଼ାର ଉଚ୍ଚତା ହେଉଛି ଦଶ ହଜାର ସାତଶହ ଏକଫୁଟ ।

ରକି ପର୍ବତମାଳାର ପଥ ଅତି ଦୁର୍ଗମ । ଦୁସ୍ତର ଗିରି ନଦୀ ଦୁର୍ଭେଦ୍ୟ ଅରଣ୍ୟ, ପ୍ରବଳ ଢାଲୁ ତାର ଚୂଡ଼ାକୁ ଯିବା ପଥ ବିପଜ୍ଜନକ କରି ରଖିଥିଲା । ସର୍ବୋପରି ନରଖାଦକ ଆଦିମ ଅଧିବାସୀମାନେ ବି ଅଛନ୍ତି, ତଥାପି କେବେ ଯେଉଁଠି ମନୁଷ୍ୟର ପଦାର୍ପଣର ସମ୍ଭାବନା ନଥିଲା, ଯନ୍ତ୍ରପାତି ନେଇ ଇଞ୍ଜିନିୟରମାନେ ଦୂରବୀକ୍ଷଣ ଯନ୍ତ୍ର ବସାଇବାକୁ ସେଠାକୁ ଯାଇଥିଲେ । ପ୍ରାଣପଣେ ବହୁଦିନ ଧରି ପରିଶ୍ରମ କରି ଗୋଟିଏ ସୁଉଚ୍ଚ ଲୌହସ୍ତମ୍ଭ ଉପରେ ସେଇ ବିରାଟ ଦୂରବୀକ୍ଷଣ ଯନ୍ତ୍ରଟି ବସାହେଲା ।

ସବୁ ଠିକ୍ ଠାକ୍ ହୋଇଗଲା ପରେ ଷ୍ଟୋନହିଲରୁ ଖରକୁ ଖର ବାରୁଦ ଆସିବାକୁ ଲାଗିଲା । ଏକ ସାଙ୍ଗରେ ଯଦି ଦଶହଜାର ମହଣ ବାରୁଦ ଷ୍ଟୋନହିଲକୁ ଅଣାଯାଇ ଥାନ୍ତା, ତେବେ କାହାରି ସାମାନ୍ୟତମ ଅସାବଧାନତା ଯୋଗୁଁ ମହାପ୍ରଳୟ ଘଟିଯିବାର ସମ୍ଭାବନା ଥିଲା । ସେଥିପାଇଁ ବହୁ ଚିନ୍ତା ପରେ ସାବଧାନୀ ବର୍ଡିକେନ୍ ଅଳ୍ପ ଅଳ୍ପ କରି ବାରୁଦ ଆଣିବାର ବ୍ୟବସ୍ଥା କରିଥିଲେ । ସରକାରୀ ଭାବରେ ଘୋଷଣା କରି ଦିଆଗଲା ଯେ, ଷ୍ଟୋନହିଲର ଚତୁର୍ଦ୍ଦିଗରେ ଦୁଇ ମାଇଲ ଭିତରେ କୌଣସି କାରଣରୁ କଥା

କାଳିବା ଚଳିବ ନାହିଁ । ଯୋଡ଼ାର ତଳେ ଘର୍ଷି ହୋଇ ବାରୁଦ କଣାରୁନାଆଁ ବାହାର ପାରେ ସେଥିପାଇଁ ଇଞ୍ଜିନିୟରମାନେ ମଧ୍ୟ ଖାଲି ପାଦରେ କାମ କଲେ । କେବଳ ଗ୍ରହରେ ବୈଦ୍ୟୁତିକ ଆଲୋକରେ କାର୍ଟ୍ରିଜ ତିଆରି ହେଲା । କାର୍ଟ୍ରିଜଗୁଡ଼ିକ ଗୋଟି ଗୋଟି କରି ଲୁହା ତାର ଯେଗ୍ରଇ ଅତି ସାବଧାନତା ସହକାରେ କମାଣ ଭିତରେ ଲଗାଇବାର ବ୍ୟବସ୍ଥା କରି ହୋଇଥିଲା । କାର୍ଟ୍ରିଜର ତାର ସଙ୍ଗରେ ଆଉ ଗୋଟିଏ ତାର ଲଗାଇ କମାଣ ଦେହର ଗୋଟିଏ କ୍ଷୁଦ୍ର ରନ୍ଧ୍ର ଦେଇ ତାହାର ଗୋଟିଏ ମୁଣ୍ଡ ବାହାରକୁ ଅଣାଗଲା । ଷ୍ଟୋନହିଲ ଠାରୁ ଦୁଇ ମାଇଲ ଦୂରରେ ଗୋଟିଏ ଶକ୍ତିଶାଳୀ ବୈଦ୍ୟୁତିକ ଯନ୍ତ୍ର ପ୍ରସ୍ତୁତ କରି ହୋଇଥିଲା ; ବହୁ ଲୌହ ସ୍ତମ୍ଭର ଉପର ଦେଇ ଶୂନ୍ୟରେ ଝୁଲି ସେଇ ତାର ସଙ୍ଗରେ ବୈଦ୍ୟୁତିକ ଯନ୍ତ୍ରର ସଂଯୋଗ ସ୍ଥାପନ କରି ହେଲା । ବର୍ବିକେନ୍ ସ୍ଥିର କରିଥିଲେ ଯେ, ଯଥା ସମୟରେ ଏଇ ଯନ୍ତ୍ରଦ୍ୱାରା ବାରୁଦରେ ଅଗ୍ନି ସଂଯୋଗ କରି ଯାଇ ପାରିବ ।

ବାରୁଦର କାର୍ଟ୍ରିଜଗୁଡ଼ିକ ନିରାପଦରେ କମାଣ ଭିତରେ ରଖା ହେଲା । କ୍ୟାପ୍ଟେନ ନିକଲ ପୁଣି ଥରେ ପରାଜୟ ସ୍ୱୀକାର କଲେ । ତିନି ନମ୍ବର ବାଜିରେ ହାରିଯାଇ କ୍ୟାପ୍ଟେନ ନିକଲ ତିନି ହଜାର ତିନିଶ ପଚାଶ ଡଲାର ବର୍ବିକେନଙ୍କୁ ଦେଲେ ।

ମାଇକେଲ୍ ଆର୍ମଷ୍ଟ୍ରଙ୍ଗଙ୍କର ଟିକେ ହେଲେ ଅବସର ନଥିଲା । ଏତେ କାମ କରିବାକୁ ପଡୁଥିଲା ଯେ ଖାଇବା ପିଇବା ମଧ୍ୟ ନିୟମ ମୁତାବକ ହୋଇପାରୁ ନଥିଲା । ନାନା ପ୍ରକାର ଜିନିଷପତ୍ର ସେ ସଂଗ୍ରହ କରି ଏକାଠି ସଜାଡ଼ି ରଖୁଥିଲେ । ବ୍ୟାରୋମିଟର, ଦୂରବୀକ୍ଷଣ ଯନ୍ତ୍ର, ପୃଥିବୀର ମାନଚିତ୍ର, ବନ୍ଧୁକ, ଗୋଳା ବାରୁଦ ଶାବଳ, କୁଠାର—ଏମିତି ଅଦ୍ଭୁତ କେତେ ଜିନିଷ ସେ ଗୋଳା ଭିତରେ ରଖିଲେ ଯେ ତାର ଇୟତ୍ତା ରହିଲା ନାହିଁ । ଅତିଶୟ ଶୀତ ପାଇଁ ଯେମିତି ପୋଷାକ ପତ୍ର ନିଆଗଲା, ଭୀଷଣ ଗରମରେ ବି ପିନ୍ଧିବାକୁ ଜାମାପଟା ସେମିତି ନିଆ ହେଲା । ଗୋଟି ଗୋଟି ଟିଣରେ ନାନା ପ୍ରକାର ଫସଲର ମଞ୍ଜି ନିଆଗଲା । ମାଂସ ଓ ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ ଯନ୍ତ୍ର ସାହାଯ୍ୟରେ ଗୋଟି ଗୋଟି ଗୁଆଭଳି ତିଆରି କରାଯାଇ ଥିଲା । ଆର୍ଡାନ୍ ଏଇ ବିଶେଷ ଧରଣର ପ୍ରସ୍ତୁତ ଖାଦ୍ୟ ଦୁଇମାସ ପାଇଁ ସାଙ୍ଗରେ ନେଲେ । ଏବଂ ସ୍ଥିର ହେଲା ସେଇ ପରିମାଣର ପାଣିସୁଦ୍ଧା ନେବାକୁ ହେବ ।

ଜଳର ସ୍ପ୍ରିଂ ଉପରେ ଯେମିତି ଆସନଗୁଡ଼ିକ ଲଗାଇବାର ପରିକଳ୍ପନା କରାଯାଇଥିଲା, ଠିକ୍ ସେଇ ଅନୁଯାୟୀ ବର୍ବିକେନ କାମଶେଷ କଲେ । ବାୟୁର ଅଭାବ ଦୂର କରିବା ପାଇଁ ଦୁଇମାସ ଉପଯୋଗୀ କ୍ଲୋରେଟ୍ ଅଫ ପଟାସ ଏବଂ କଷ୍ଟିକ୍ ପଟାସ ନିଆ ହେଲା ।

କ୍ୟାପ୍‌ଟେନ ନକଲ୍ କିନ୍ତୁ ‹ଢ୍‌କ୍ରିଢେଅଙ୍କଙ୍କ ସେ ପେଁନ୍ତ୍ର ବି କହୁଛନ୍ତି, 'ଉହୁଁ ! ଯାହା ଇଚ୍ଛା ତା କରନ୍ତୁନା କାହିଁକି ଗୋଳା କିନ୍ତୁ କୌଣସି ମତେ ଆଗେଇ ଯିବ ନାହିଁ ।'

ବର୍ବିକେନ ମୃଦୁ ହସି ପଚାରିଲେ, 'କାହିଁକି ଯିବ ନାହିଁ ?'

କ୍ୟାପ୍‌ଟେନ ନକଲ ମୃଦୁ ହସି କହିଲେ, 'ଆସ୍ତେ ଆସ୍ତେ ଗୋଳାଟାର ଓଜନ କେତେ ବଢି ଯାଉଛି ଲକ୍ଷ୍ୟ କରୁଛନ୍ତି ? ଏତେ ଭାରି ଗୋଳାଟା କମାଣ ଭିତରେ ରଖୁ ରଖୁ ସମସ୍ତ କାର୍ଟ୍ରିଜଗୁଡ଼ିକ ଏକ ସଙ୍ଗରେ ଜଳିଉଠି ପ୍ରଳୟକାଣ୍ଡ ସୃଷ୍ଟି କରିବ ।'

ଏକଥା ଶୁଣି ବର୍ବିକେନ ଗମ୍ଭୀର ସ୍ୱରରେ କହିଲେ, 'ଆଚ୍ଛା ଦେଖା ଯାଉ ।

ଆଗରୁ ନିର୍ଦ୍ଦେଶ ଦେଇ ଗୋଟିଏ ଖୁବ୍ ମଜବୁତ୍ କପିକଳ ଅଣା ଯାଇଥିଲା । କପିକଳଟିର ସବୁଗୁଡ଼ିକ ଶିକୁଳିଗୁଡ଼ିକୁ ଖୁବ୍ ସାବଧାନ ସହକାରେ ପରୀକ୍ଷା କରି ଯେତେବେଳେ ଗୋଳାଟାକୁ ଉଠାଇବାର ବ୍ୟବସ୍ଥା କରାହେଲା, ସେତେବେଳେ ଗନକ୍ଲବର ସକଳ ସଦସ୍ୟମାନଙ୍କ ମନରେ ଯେ କି ପ୍ରକାର ଉତ୍କଣ୍ଠା ଆଶଂକା ଦେଖା ଦେଇଥିଲା, ତାହା ଭାଷାରେ ପ୍ରକାଶ କରି ହେବନାହିଁ, କେହି କେହି ଉଦ୍‌ବିଗ୍ନ ହୋଇ ଭାବିଲେ, 'ଶିକୁଳିଟା ଶେଷରେ ଛିଡ଼ି ନଗଲେ ହେଲା, ଯଦି ଛିଡ଼ିଯାଏ ତାହେଲେ ତ ସର୍ବନାଶ ! ବିଦ୍ୟୁତ ବେଗରେ ଗୋଳାଟା ଯାଇ କମାଣରେ ତଳେ ପଡ଼ିବ ଏବଂ ତତ୍‌କ୍ଷଣାତ୍ ସେଇ ଆକସ୍ମିକ ଆଘାତରେ କାର୍ଟ୍ରିଜଗୁଡ଼ିକ ଜଳି ଉଠିବ । ତାପରେ·· ··ଉଃ, ସାଂଘାତିକ ପରିଣତିର କଥା ଭାବିଲା ବେଳକୁ—

ଖୁବ୍ ଆସ୍ତେ ଆସ୍ତେ କପିକଳର ହ୍ୟାଣ୍ଡେଲ୍ ଘୁରାଇ ସେଇ ମସ୍ତ ଗୋଳାଟାକୁ କମାଣ ଭିତରକୁ ଖସାଇ, ଆସ୍ତେ ଆସ୍ତେ ଗୋଳାଟା ଗର୍ଭରକୁ ଯାଇ ଆଖିର ଆଢୁଆଳ ହୋଇଗଲା । ସମସ୍ତେ ରୁଦ୍ଧ ଶ୍ୱାସରେ ଶେଷ ମୁହୂର୍ତ୍ତକୁ ଅପେକ୍ଷା କରି ରହିଲେ । କିନ୍ତୁ ନା,

କୌଣସି ଦୁର୍ଘଟଣା ଘଟିନି ନାହିଁ । ଗୋଲାଟା ନିର୍ବିଘ୍ନରେ ଯଥା ଯଥା ସ୍ଥାନରେ ଯାଇ ରହିଲା ।

କ୍ୟାପ୍‌ଟେନ ନକଲ୍ ଟଙ୍କା ସବୁ ବର୍ବିକେନଙ୍କ ନିକଟରେ ଛୁଡ଼ା ହୋଇ ଥିଲେ । ସେ ବର୍ବିକେନଙ୍କ କରମର୍ଦ୍ଦନ କରି ଅଭିନନ୍ଦନ ଜଣାଇଲେ, 'ଆଉ ଗୋଟାଏ ବାଜି ବି ହାରିଲି, ଏଇ ବାଜିର ଟଙ୍କା ନିଅନ୍ତୁ ।'

ବର୍ବିକେନ ହସି ହସି କହିଲେ, 'ନା ନା ଏକଅଣ କରୁଛନ୍ତି ? ଆପଣତ ବର୍ତ୍ତମାନ ଆମମାନଙ୍କ ମଧ୍ୟରୁ ଜଣେ । ଆପଣଙ୍କ ପାଖରୁ କଣ ବାଜିର ଟଙ୍କା ନେବା ଚଳିବ ?

'କାହିଁକି ନେଇ ହେବନି ?' ନିକଲ୍ କହିଲେ, 'ନିଶ୍ଚୟ ନେଇ ହେବ । ବାଜି—ଚିରଦିନ ବାଜି । ସେଥି ଭିତରେ ଆପଣା ପର କ'ଣ ? ନିଜର କଥା ଠିକ୍ ରଖିବାକୁ ହେବତ ? ଥରେ ଯେତେବେଳେ କଥା ଦେଇଛି, ସେତେବେଳେ—ଏଇ ନିଅନ୍ତୁ, ଟଙ୍କା ନିଅନ୍ତୁ ।'

ବର୍ବିକେନ ଟଙ୍କାର ଥଳି ହାତରେ ନେଇ କହିଲେ, ତାହେଲେ ଆପଣ ବାକି ଦୁଇଟି ବାଜିର ଟଙ୍କା ବି ନେଇ ନେଇ ପାରନ୍ତି । କାରଣ ସେ ଦୁଇଟିକୁ ବି ଆପଣଙ୍କୁ ହାରିବାକୁ ହେବ ?

କ୍ୟାପ୍‌ଟେନ ନିକଲ୍ କହିଲେ, 'ସେ ବିଷୟରେ କିନ୍ତୁ ମୋର ଘୋର ସନ୍ଦେହ ଅଛି । ଏବଂ ସନ୍ଦେହ ଅଛି ବୋଲିତ ବାଜି ଲଗାଇଛି, ସୁତରାଂ ଆଗେ ହାରିଯାଏ ତାପରେ ବାଜିର ଟଙ୍କାଟା ଦେବି । କ'ଣ କହୁଛନ୍ତି ?'

ବେତାର ମାଧ୍ୟମରେ ଘୋଷଣା କରିଦିଆ ଯାଇଥିଲା ଯେ, ପହିଲା ଡିସେମ୍ବର ରାତି ଦଶଟା ଛୟାଳିଶ ମିନିଟ ଚାଳିଶ ସେକେଣ୍ଡ ସମୟରେ ଗନକ୍ଲବ ଦ୍ୱାରା ପ୍ରସ୍ତୁତ ସେଇ ଅଦ୍ଭୁତ ଗୋଲା ଇମ୍ପେ ବାର୍ବିକେନ, କ୍ୟାପ୍ଟେନ ନିକଲ ଏବଂ ମାଇକେଲ ଆର୍ଡାଙ୍କୁ ନେଇ ଚନ୍ଦ୍ରଲୋକ ଅଭିମୁଖରେ ଛୁଟି ଚାଲିବ—ଆମେରିକା ଓ ଫ୍ରାନ୍ସର ଏକ ସାଙ୍ଗରେ ଚନ୍ଦ୍ରଲୋକ ଦଖଲ କରିବାକୁ ଯିବେ। ହୁଏତ ସେଇଦିନ ଯିବାକୁ ହେବ, ନଚେତ୍ ପୁଣି ଅଠର ବର୍ଷ ଏଗାର ଦିନ ପରେ।

ସମସ୍ତ ପୃଥିବୀ ବେତାରର ପରବର୍ତ୍ତୀ ଘୋଷଣା ଅପେକ୍ଷାରେ ଉଦ୍‌ଗ୍ରୀବ ହୋଇ ପ୍ରତୀକ୍ଷା କରିବାକୁ ଲାଗିଲା। ଯେଉଁମାନେ ପାରିଲେ ସେମାନେ ଆମେରିକାକୁ ଚାଲି ଆସି ଷ୍ଟୋନହିଲରେ ପହଞ୍ଚିଲେ, ଯେଉଁମାନେ ନ ପାରିଲେ, ସେମାନେ ଆଉ କ'ଣ କରିବେ ? ବେତାର ଚାବି ଘୁରାଇ ଘୁରାଇ ଦୁର୍ବହ ପ୍ରତୀକ୍ଷାରେ ବସି ରହିଲେ।

ଅବଶେଷରେ ଦିନେ ସେଇ ବହୁପ୍ରତୀକ୍ଷିତ ପହିଲା ଡିସେମ୍ବର ଆସିଲା।

ସୂର୍ଯ୍ୟୋଦୟର ପୂର୍ବରୁ ଷ୍ଟୋନହିଲର ଚତୁର୍ଦ୍ଦିଗରେ ଅଜସ୍ର ଲୋକ ଜମା ହୋଇଥିଲେ। ଯେଉଁ ଆଡ଼କୁ ଚାହିଁ, ଜନସମୁଦ୍ରର ଉଦ୍‌ବେଳିତ ତରଙ୍ଗ ଦେଖାଯାଉଛି। ସମସ୍ତେ ଉଦ୍‌ଗ୍ରୀବ ହୋଇ

ଅପେକ୍ଷା କରିଛନ୍ତି ଗତ ଦଶଟା ଛପ୍ପନ ମିନିଟ ଚଉଦ ସେକେଣ୍ଡ ପର୍ଯ୍ୟନ୍ତ।

ଏଥର ପ୍ରାୟ ଏକ ସପ୍ତାହ ପୂର୍ବରୁ କ୍ଷେପଣସ୍ଥଳର ଚତୁଃପାର୍ଶ୍ୱରେ ଅଜସ୍ର ତମ୍ବୁ ପଡ଼ିଥିଲା। ସତେ ଯେମିତି ଏକ ତମ୍ବୁର ନଗର। ଧାଡ଼ି ଧାଡ଼ି ଦୋକାନ, ସବୁଜ ଘର, ରେସ୍ତୋରାଁ ସବୁ ତମ୍ବୁ ମଧ୍ୟରେ। ପଦ୍ମଭଗ୍ନା ଓସେମ୍ବର ଭୋର ହେଉ ନହେଉଣୁ କେଉଁଠି ଗୋଟିଏ ପକାଇବାର ସ୍ଥାନ ରହିଲା ନାହିଁ। ପନ୍ଦର ମିନିଟ ଅନ୍ତରରେ ସେଇ ତମ୍ବୁ ସହରକୁ ହଜାର ହଜାର ଲୋକ ନେଇ ଆସିବାକୁ ଲାଗିଲା ରେଲ୍‌ଗାଡ଼ି।

ବର୍ଟିକେନ ଅତି ଆନନ୍ଦରେ ସେଇ ତମ୍ବୁ ସହରର ନାମ ଦେଇଦେଲେ, ସିଟି ଅଫ୍ ମାଇକେଲ ଆର୍ଡାଁ।

'ସିଟି ଅଫ୍ ମାଇକେଲ ଅର୍ଡାଁରେ ପୃଥିବୀର ସବୁ ଦେଶର ଲୋକେ ଜମା ହୋଇଥିଲେ। ସେମାନେ କଥୋପକଥନ ହେଉଥିଲେ ପୃଥିବୀର ସବୁ ଭାଷାରେ, ସବୁ ବୟସର ଲୋକ ବି ଜମା ହୋଇଥିଲେ।

ତାପରେ ଆସ୍ତେ ଆସ୍ତେ କୁହେଳିକା ଘେରା ସନ୍ଧ୍ୟା ସିଟି ଅଫ୍ ମାଇକେଲ ଆର୍ଡାଁକୁ ଓହ୍ଲାଇ ଆସିଲା। ସାତଟା ସମୟରେ ଆକାଶରେ ଦେଖାଗଲା ସକଳ ଉତ୍ତେଜନାର ମୂଳ ସେଇ ଚନ୍ଦ୍ରକୁ। ନିର୍ମେଘ ଆକାଶରେ ପୂନେଇଁ ଚନ୍ଦ୍ର ତାର ସ୍ଫଟିକ ଜ୍ୟୋତ୍ସ୍ନା ବିକିରଣ କଲା। ଜନ ପର୍ଯ୍ୟନ୍ତ ଟଣା ଧନୁର୍ଗୁଣ ପରି ପ୍ରତୀକ୍ଷାରତ ଜନତା ସମବେତ କଣ୍ଠରେ ଚନ୍ଦ୍ରର ଦୀର୍ଘଜୀବନ କାମନା କଲେ। ଏଇ ତାରିଖ ପୂର୍ବରୁ ଲୋକମାନେ କେତେଥର ଚନ୍ଦ୍ରକୁ ଦେଖିଛନ୍ତି, କେତେ ପୂର୍ଣ୍ଣିମୀ ରାତିରେ ନଶୋଇ ଉତ୍ସବ କରି କଟାଇଛନ୍ତି, କିନ୍ତୁ କାହିଁ, ଚନ୍ଦ୍ର ତ ଏତେ ସୁନ୍ଦର କେବେ ଦେଖା ଯାଇନି ! ଚନ୍ଦ୍ରକୁ ସେଦିନ ମନେ ହେଲା ପରମାତ୍ମୀୟ, ନିର୍ନିମେଷ ଚକ୍ଷୁରେ

ସମସ୍ତେ ସୁନ୍ଦରକୁ ଦେଖିବାକୁ ଲାଗିଲେ । ସେମାନେ କେବଳ ସୁନ୍ଦର ଦୀର୍ଘଜୀବନ କାମନା କଲେ ନାହିଁ, କଲେ ଗନକ୍ଲବର, ବର୍ବିନ୍କେନଙ୍କର ନିକଲ୍ଙ୍କର ଓ ମାଇକେଲ୍ ଅର୍ଦାଙ୍କର ।

ଲକ୍ଷ ଲକ୍ଷ ଲୋକଙ୍କର କଣ୍ଠର ଆବାଜରେ ଷ୍ଟୋନହ୍ୱଲ୍ କଂପି ଉଠିଲା । କଂପି ଉଠିଲା ଟମ୍ପା, ଫ୍ଲୋରିଡ଼ା । କଂପି ଉଠିଲା ସମସ୍ତ ଯୁକ୍ତରାଷ୍ଟ୍ର ଆମେରିକା । ଷ୍ଟୋନହ୍ୱଲର ଗିରି କନ୍ଦରରେ ପ୍ରତିଧ୍ୱନିତ ହେଲା ଲକ୍ଷ କଣ୍ଠସ୍ୱର—'ଭିଭ୍ ଲା ଲ୍ୟୁନ—ଚନ୍ଦ୍ରଲୋକ ଜିନ୍ଦାବାଦ !'

ସାତ ଦଶଟା ବେଳେ ମାଇକେଲ୍ ଅଲ୍ଡ୍ରିନ୍, କ୍ୟାପ୍ଟେନ କଲିନ୍ସ ଏବଂ ଇମ୍ପେ ବର୍ବିକେନ ହସି ହସି କମାଣ ପାଖରେ ଆସି ଛିଡ଼ା ହେଲେ । ରେଲ୍‌ଗାଡ଼ିରେ କୌଣସି ଦୂର-ବିଦେଶକୁ ଯିବା ସମୟରେ ସାଧାରଣ ଲୋକର ମନରେ ଯେତିକି ଉତ୍କଣ୍ଠା ଦେଖାଦିଏ, ସେମାନଙ୍କ ମୁଖମଣ୍ଡଳରେ ସେତିକି ଚିହ୍ନଏ ବି କେହି ଲକ୍ଷ୍ୟ କରି ପାରିଲେ ନାହିଁ । ସେମାନେ ଗୋଲା ଭିତରକୁ ଯିବା ପାଇଁ ପ୍ରସ୍ତୁତ ହେଲେ ।

ମ୍ୟାଟସନ କହିଲେ, 'ବର୍ବିକେନ, ବର୍ତ୍ତମାନ ବି ସମୟ ଅଛି । ମୁଁ ଆପଣଙ୍କର ସଙ୍ଗୀ ହେବି ।'

'ନା ମ୍ୟାଟସନ, ସେକଥା କିପରି ହେବ ? ବର୍ବିକେନ କହିଲେ, 'ଆମେମାନେ ପୃଥିବୀର ଅଗ୍ରଦୂତ ହୋଇ ପ୍ରଥମେ ଚନ୍ଦ୍ରକୁ ଯାଉଁ । କମାଣ ତ ରହିଛି, ପରେ ଦରକାର ହେଲେ ପୃଥିବୀର ଖବର ତୁମେମାନେ ଆମପାଖକୁ ପଠାଇ ପାରିବ ।'

ମାଇକେଲ ଅଲ୍ଡ୍ରିନ କହିଲେ, ମିଷ୍ଟର ବର୍ବିକେନ କିନ୍ତୁ ଠିକ୍ କଥା କହୁଛନ୍ତି, ମ୍ୟାଟସନ୍ । ଏଇ କାମଟି କରିବା ପାଇଁ ଆପଣଙ୍କୁ ପୃଥିବୀରେ ରହିବାକୁ ହେବ, ଅନ୍ତ କିଛି ନହେଲେ ମଝିରେ ମଝିରେ ଆପଣ ଖାଦ୍ୟ ଓ ପାଣୀୟ ତ ପଠାଇ ପାରିବେ ।'

ଏକଥା ଶୁଣି ମ୍ୟାଟସନ କୌଣସି ମତେ ନିଜକୁ ସାନ୍ତ୍ୱନା ଦେଲେ । ଉପରନ୍ତୁ ଉତ୍ସାହିତ କଣ୍ଠରେ କହିଲେ, 'ପ୍ରତ୍ୟେକ ବର୍ଷ

ବଡ଼ଦିନ ସମୟରେ ଆପଣମାନେ ଖାଦ୍ୟ ଓ ପାନୀୟ ପାଇବେ ଏବଂ ତାର ସାଙ୍ଗରେ ପାଇବେ ସମଗ୍ର ପୃଥିବୀର ଶୁଭେଚ୍ଛା ଓ ଅଭିନନ୍ଦନ ।' ଏଇ କଥା କହି ମ୍ୟାଷ୍ଟସନ କମ୍ପିତ ଉତ୍ତେଜିତ ହୋଇ ବନ୍ଧୁମାନଙ୍କ ସହିତ କରମର୍ଦ୍ଦନ କରି ବିଦାୟ ନେଲେ ।

ଆଉ ଗୋଟିଏ ମୁହୂର୍ତ୍ତ ବିଳମ୍ବ ନକରି କ୍ୟାପ୍ଟେନ ନିକଲ, ମାଇକେଲ, ଆର୍ଡାନ ଏବଂ ଉଭୟେ ବର୍ବିକେନ ଯନ୍ତ୍ର ସାହାଯ୍ୟରେ ଗୋଳା ଭିତରେ ପଶିଲେ । ସମବେତ ଜନତାର ଉଲ୍ଲାସ ଧ୍ୱନିରେ କମ୍ପମାଣ ନଳ ଭିତରର ଅନ୍ଧକାର ଗମ ଗମ ହେଉଥିଲା । ଗୋଳା ଭିତରେ ପଶି ଯେମିତି ସେମାନେ ଭଲ ଭାବରେ ଦରଜା ବନ୍ଦ କରିଛନ୍ତି, ସାଙ୍ଗେ ସାଙ୍ଗେ ଜମାଟ ସ୍ତବ୍ଧତା ମଧ୍ୟରେ ଅନୁଭବ କଲେ ପୃଥିବୀ ସହିତ ପ୍ରବଳ ବିଚ୍ଛେଦ ।

ରକ ମାଉଣ୍ଟେନର ଚୂଡ଼ାରେ ଛିଡ଼ା ହୋଇ ଇଞ୍ଜିନିୟର ମାର୍ଚିସନ ନିଷ୍ପଲକ ଆଖିରେ ଘଣ୍ଟିର କଣ୍ଟାକୁ ଚାହିଁ ରହିଥିଲେ । ସେଇ ଚରମ ମୁହୂର୍ତ୍ତଟି ଯେତେ ନିକଟରୁ ନିକଟତର ହେବାକୁ ଲାଗିଲା, ଜନତା ସେତିକି ପରିମାଣରେ ଉଦ୍‌ବେଗ ଓ ଚଞ୍ଚଳ ହେବାକୁ ଲାଗିଲା । କୌଣସି ଯାଦୁକରର ସୁନାକାଠି ସ୍ପର୍ଶରେ ସତେ ଯେପରି ସେମାନଙ୍କର କଥାବାର୍ତ୍ତା ବନ୍ଦ ହୋଇଗଲା । କାନ ପର୍ଯ୍ୟନ୍ତ ଟଣା ହୋଇଥିବା ଧନୁଗୁଣ ପରି ସ୍ପନ୍ଦନହୀନ ହୋଇ ସେମାନେ ଅପେକ୍ଷା କରିବାକୁ ଲାଗିଲେ ସେଇ ଚରମ ମୁହୂର୍ତ୍ତକୁ ।

ମାର୍ଚିସନ ନୀରବରେ ଘଣ୍ଟିର କଣ୍ଟାକୁ ଚାହିଁ ଦେଖିଲେ, ଦଶଟା ଛୟାଳିଶ । ଆଉ ମାତ୍ର ଚାଳିଶ ସେକେଣ୍ଡ । ମାର୍ଚିସନଙ୍କ ହୃଦ୍‌ପିଣ୍ଡଟା ଥରି ଥରି ଉଠିଲା । ସେକେଣ୍ଡ କଣ୍ଟା ଘୂରି ଚାଲିଛି । ଦଶ -ପନ୍ଦର-କୋଡ଼ିଏ-ପଚିଶ-ତିରିଶ ! ଆଉ ଦଶ ସେକେଣ୍ଡ ମାତ୍ର । ଉତ୍ତେଜନାରେ ସମବେତ ଜନସାଧାରଣ ଗୋଟିଏ ଅସ୍ଫୁଟ ଆୱାଜ କଲେ । ମାର୍ଚିସନ ଗଣିବାକୁ ଲାଗିଲେ, ପଇଁତିରିଶ, ଛତିଶ,

ସଇଁତିରିଶ, ଅଠତିରିଶ । ମାର୍ଟିସନଙ୍କ ହୃତପିଣ୍ଡରେ ପ୍ରବଳ ସ୍ୱବରେ ଆନ୍ଦୋଳନ ସୃଷ୍ଟି ହେଲା, ଡାହାଣହାତ ସ୍ପର୍ଶକଲା ବୈଦ୍ୟୁତିକ ବୋତାମ ବନ୍ଦ ହୋଇଗଲା ନିୟମିତ ନିଶ୍ୱାସ ପ୍ରଶ୍ୱାସ, ଅଣେଚାଳିଶ—ଚାଳିଶ । ରାତି ଦଶଟା ଛୟାଳିଶ ମିନିଟ ଚାଳିଶ ସେକେଣ୍ଡ ।

ଯାହା ଘଟିଲା ତାହା ଅବର୍ଣ୍ଣନୀୟ । ଲକ୍ଷେ ବଜ୍ର ଯଦି ଭାଙ୍ଗି ପଡ଼ିଥାନ୍ତା ଜମାଟବନ୍ଧା ସ୍ତବ୍ଧତା ଭିତରେ, ତାହାର ଯେଉଁ ଆବାଜ ହୋଇଥାନ୍ତା, କମାଣର ଗର୍ଜନ ନିକଟରେ ସେ ନଗଣ୍ୟ । ହଠାତ୍ ଯେପରି କୌଣସି ଆଗ୍ନେୟ ଗିରିର ଘୁମନ୍ତ ଜ୍ୱାଳାମୁଖ ଫାଟି ଛୁଟିକ ବାହାରିଗଲା ତରଳ ଲାଭାସ୍ରୋତ । ଠିକ ସେହିପରି କମାଣ ନଳ ଠାରୁ ଆକାଶ ସ୍ପର୍ଶକରି ଉଠିଲା ଲକ ଲକ ନାଲି ନିଆଁ । ମୁହୂର୍ତ୍ତିକ ପାଇଁ ସାରା ଯୁକ୍ତରାଷ୍ଟ୍ର ସେଇ ଆଲୋକରେ ଉଦ୍ଭାସିତ ହୋଇ ଉଠିଲା, ସତେ ଯେମିତି ସୂର୍ଯ୍ୟୋଦୟ ହୋଇଛି ।

ସମସ୍ତ ଯୁକ୍ତରାଷ୍ଟ୍ର କମ୍ପି ଉଠିଥିଲା ସେଇ କମାଣ ଗର୍ଜନରେ । ଜନତା ମଧ୍ୟରେ ବହୁଲୋକ ମୂର୍ଚ୍ଛିତ ହୋଇ ପଡ଼ିଲେ, କିଏ କାହା ଉପରେ ପଡ଼ିଲା, କିଏ କାହାକୁ ପାଦତଳେ ଦଳି ଦେଲା—ପ୍ରାଣ ଭୟରେ ପଳାଇ ଯାଉଁ ଯାଉଁ କିଏ ପଡ଼ିଯାଇ ମୃତ୍ୟୁବରଣ କଲା, ସେ ଖବର ରଖୁଛି କିଏ ? ଭୀଷଣ ଚିତ୍କାରରେ, ଭୟଙ୍କର ଆର୍ତ୍ତନାଦରେ ଷ୍ଟୋନହିଲ ଯେପରି ଏକ ଭୟାବହ ମହାଶ୍ମଶାନରେ ପରିଣତ ହେଲା ।

ବାୟୁମଣ୍ଡଳରେ ଏପରି ଆନ୍ଦୋଳନ ସୃଷ୍ଟି ହୋଇଥିଲା ଯେ, ତତ୍‌କ୍ଷଣାତ୍ ପ୍ରବଳ ଘୂର୍ଣ୍ଣିବାତ୍ୟା ପାଖଆଖ ଅଞ୍ଚଳ ତଥା ଯୁକ୍ତରାଷ୍ଟ୍ରର ଅଞ୍ଚଳରେ ବହିଗଲା । ଘୂର୍ଣ୍ଣିବାତ୍ୟା ଉଡ଼ାଇ ନେଲା ହଜାର ହଜାର ତମ୍ବୁ, ବନ ପ୍ରାନ୍ତରରେ ଚକ୍ଷୁର ପଲକରେ ବହୁ ଗଛବୃକ୍ଷ ଭାଙ୍ଗିଗଲା । ଟମ୍ପାରେ ଗଢି ଉଠିଥିବା ନୂତନ ଘରଦ୍ୱାର ଭାଙ୍ଗି ଚୂରମାର ହୋଇଗଲା । ରେଲଲାଇନରୁ ଚଳନ୍ତ ରେଲଗାଡ଼ି ଓଲଟି ପଡ଼ିଲା ବିଲ ପ୍ରାନ୍ତର ମଧ୍ୟକୁ । ବନ୍ଦର ମଧ୍ୟରେ ଜାହାଜଗୁଡ଼ିକର ଶିକୁଳି

ଛିଡ଼ିଗଲା, ନଙ୍ଗର ଖସିଗଲା, ସେଗୁଡ଼ିକ ମହାସାଗର ମଧ୍ୟରେ ଓଲଟି ପଡ଼ିଲା । ମହାସାଗରର ଫେନିଳ ଜଳରେ ଯେଉଁ ଭଉଁରୀସବୁ ସୃଷ୍ଟି ହୋଇଥିଲା ସେଗୁଡ଼ିକ ଯେ କେତେ ଜାହାଜକୁ ଗ୍ରାସ କରିନେଇ ପରି ନଚେଇ ନଚେଇ ଶେଷକୁ ବୁଡ଼େଇ ଦେଇଛି, ତାର ସଠିକ ହିସାବ ଜଣା ପଡ଼ିଥିଲା ବହୁକାଳ ପରେ ।

ସେଇ ରାତ୍ରରେ ରୂପାଥାଳି ପରି ସୁନ୍ଦର ଗୋଲକଟା ରହି ରହି ଜ୍ୟୋତ୍ସ୍ନାର ଧାରା ବିକିରଣ କରୁଥିଲା । କିନ୍ତୁ ସେଇ ମୁହୂର୍ତ୍ତରେ ସେଇ ସୁନ୍ଦର ଦୃଶ୍ୟ ମେଘରେ ଢାଙ୍କି ହୋଇଗଲା । କଳାଧୂଆଁ ଓ ମେଘ ଭେଦକରି କାହାରି ଆଖି ଆଉ କିଛି ଦେଖି ପାରିଲା ନାହିଁ । ବିଶେଷ ଭାବରେ ପ୍ରସ୍ତୁତ ସେଇ ପ୍ରବଳ ଦୂରବୀକ୍ଷଣ ସାହାଯ୍ୟରେ ମଧ୍ୟ ଶେଷ ପର୍ଯ୍ୟନ୍ତ ସେଇ ଗୋଲାଟାର କଣ ହେଲା କିଛି ଜାଣି ହେଲା ନାହିଁ, ଧୂଆଁ ଓ ମେଘ ଯୋଗୁଁ ।

ପରଦିନ ସକାଳେ ମଧ୍ୟ ଆକାଶ ରହିଲା ମେଘାଚ୍ଛନ୍ନ ଓ ଅନ୍ଧକାର ଅପରାହ୍ନରେ ମଧ୍ୟ ସାମାନ୍ୟତମ ସୂର୍ଯ୍ୟାଲୋକ କେହି ଦେଖି ପାରିଲେ ନାହିଁ, ରାତିର କଳା ଆକାଶରେ ସେଦିନ ଚାଲିଲା ଝଡ଼ ବତାସର ରୁଦ୍ର ତାଣ୍ଡବ ।

ତାପରଦିନ ବେତାର ଯୋଗେ ଘୋଷଣା କରାହେଲା, 'କେମ୍ବ୍ରିଜ ମାନ ମନ୍ଦିରର କର୍ତ୍ତୃପକ୍ଷ ଜଣାଇଛନ୍ତି ଯେ, ଜମାଟର ଗୋଲା ପ୍ରଚଣ୍ଡ ବେଗରେ ଚନ୍ଦ୍ର ନିକଟକୁ ଛୁଟି ଚାଲିଛି !

ବିସ୍ଫୋରଣର ଭୟଙ୍କର ଆବାଜରେ କମ୍ପି ଉଠିଲା ମାଟି, ଝଙ୍କ ଝଙ୍କ ଲାଲ୍ ଅଗ୍ନିଶିଖା ଆକାଶ ସ୍ପର୍ଶକଲା । ବୈଦ୍ୟୁତିକ କଳଟିର ବୋତାମ ଟିପୁଥିଲେ ମାର୍ଟିସନ, ବିସ୍ଫୋରଣ ସାଙ୍ଗେ ସାଙ୍ଗେ ସେ ଦୂରକୁ ଛିଟିକି ପଡ଼ିଲେ, କିଛି ସମୟ ପାଇଁ ତାଙ୍କର ଚେତନା ଲୋପ ହୋଇଗଲା ।

ଧୂଆଁରେ ଆକାଶ ଅଚ୍ଛାଦିତ ହୋଇଗଲା । ଷ୍ଟୋନହ୍ୱଲର ଆକାଶରେ ଅମାବାସ୍ୟା ରାତ୍ରିର ଅନ୍ଧକାର ପରି ମେଘ ଜମି ଉଠିଲା, ଭୟ, ଉତ୍କଣ୍ଠାରେ ଥର ଥର ହୋଇ କମ୍ପି ଉଠିଲେ ଉପସ୍ଥିତ ଜନତା । କେବଳ ଷ୍ଟୋନହ୍ୱଲ କମ୍ପିଲା ନାହିଁ, ଝମ୍ପା ବି କମ୍ପି ଉଠିଲା, ଏବଂ ସମସ୍ତ ଯୁକ୍ତରାଷ୍ଟ୍ର । ସମୁଦ୍ର ଜଳ ହଠାତ୍ ତରଙ୍ଗ ତୋଳି ଫୁଲି ଉଠିଲା ଉପରକୁ, ସେଇ ଫେଣ ମିଶା ଜଳରେ ସୃଷ୍ଟି ହେଲା ଅସଂଖ୍ୟ ଭଉଁରୀ । ସମସ୍ତେ ଯେତେବେଳେ ଚେତନା ଫେରି ପାଇଲେ ପ୍ରଥମେ ଚାହିଁଲେ ଆକାଶକୁ । କିନ୍ତୁ ଅନ୍ଧକାରରେ କିଛି ଦେଖାଗଲା ନାହିଁ । କେଉଁ ମହାଶୂନ୍ୟରେ ଗୋଲକଟି ଦେତେ-ବେଳକୁ ଛୁଟି ଚାଲିଛି, କିଏ ଜାଣେ ।

ଗନଳ୍ମବ ଡଆର ସେଇ ଯାତ୍ରୀବାହୀ ଗୋଲକଟି କିନ୍ତୁ ସେତେବେଳକୁ ସୁଦୂର ଅଭିଯାନରେ ପ୍ରଚଣ୍ଡ ବେଗରେ ଛୁଟି ଚାଲିଛି ଚନ୍ଦ୍ର ଅଭିମୁଖରେ । ଯେଉଁ ଚନ୍ଦ୍ରକୁ ଚାହିଁ ଏତେ କାଳଧରି ମା'ମାନେ 'ଆ ଜହ୍ନମାମୁଁ ସରଗଶଶୀ' ଗାଇ ପିଲାମାନଙ୍କୁ ଶୁଆଇ ପକଉଥିଲେ ସେଇ ଚାନ୍ଦ ଶେଷ ପର୍ଯ୍ୟନ୍ତ ମନୁଷ୍ୟର ଦଖଲକୁ ଆସିବ । ଜ୍ୟୋତିର୍ବିଦମାନେ ଯାହାକୁ ମହାଶୂନ୍ୟର ଅନ୍ୟତମ ବସ୍ତୁ ବୋଲି

ମନେକରୁ ଥିଲେ, ସେଇ ସ୍ୱପ୍ନକୁ ଆଜ ଜୟ କରିବାକୁ ଚାଲିଛନ୍ତି ପୃଥିବୀର ତିନୋଟି ମାନବ ସନ୍ତାନ !

ଉର୍ଦ୍ଧ୍ୱେ ପୃଥିବୀର ଅନେକ, ଅନେକ ଉପରେ ସୁଦୂର ଆକାଶର କୋଳରେ, ମହାଶୂନ୍ୟରେ ଗ୍ରହ ଜଗତରେ ଅନ୍ୟତମ ବିସ୍ମୟକର ରାଜ୍ୟ, ଚନ୍ଦ୍ର । କଣ ସେଇ ଚନ୍ଦ୍ରର ଇତିହାସ ? କେଉଁମାନେ ରହନ୍ତି ଚନ୍ଦ୍ରରେ ? ଚନ୍ଦ୍ର କଣ ସତରେ ବାସ ଯୋଗ୍ୟ ? କିଏ ଜାଣିଛି କି ରହସ୍ୟ ଲୁଚି ରହିଛି ପୃଥିବୀର ସେଇ ଉପଗ୍ରହରେ । ଶେଷକୁ ଚନ୍ଦ୍ରକୁ ଜୟକରିବାକୁ ଚାଲିଛି ଦୁଃସାହସୀ ମଣିଷ, ଯେଉଁ ମଣିଷ ଦିନେ ଗୁହାରେ ବାସ କରୁଥିଲା, ଖୋଖା ଖୋଖା ପଥରର ହାତ ହତିଆରରେ ହିଂସ୍ର ପଶୁ ସହିତ ଲଢାଇ କରୁଥିଲା, ନିର୍ମମ ପ୍ରକୃତିର ପ୍ରତିରୋଧ ବିପର୍ଯ୍ୟସ୍ତ କଣ ଥିଏ ଆତ୍ମରକ୍ଷା କରୁଥିଲେ, ସିଏ ଗଢ଼ିଛି ବୈଚିତ୍ର୍ୟମୟ ବିଜ୍ଞାନ, ଦୀପ୍ତିମନ୍ତ ଦର୍ଶନ, ଆଲୋକ ପ୍ରାପ୍ତ ସାହିତ୍ୟ ।

ଏଇସବୁ ବିଷୟରେ ସବୁଗୁଡ଼ିକ ଖବର କାଗଜ ସମ୍ବାଦ ପରିବେଷଣ କଲେ, ଯେତେବେଳେ କେମ୍ବ୍ରିଜ ମାନମନ୍ଦିର ଦୁଇଦିନ ପରେ ଘୋଷଣା କଲେ, 'ଗନଜ୍ଜ୍ୱର ବିଶାଳ ଗୋଲକଟିକୁ ତୀବ୍ର ବେଗରେ ଛୁଟି ଯାଉଥିବାର ଦେଖାଯାଉଛି । ଗୋଲକଟିର ଲକ୍ଷ୍ୟ ପୃଥିବୀର ବହୁ ଆଲୋଚିତ ଉପଗ୍ରହ : ଚନ୍ଦ୍ର ।' ଏଇ ସମସ୍ତ ସମ୍ବାଦର ଶିରୋନାମା ବଡ଼ ବଡ଼ ଅକ୍ଷରରେ ଛପା ହେଲା

'ପୃଥିବୀର ପ୍ରଥମ ବିସ୍ମୟ !

ଗନଜ୍ଜ୍ୱର ଗ୍ରହାନ୍ତର ଅଭିଯାନ !!

ଚନ୍ଦ୍ରାଲୋକ ଅଭିମୁଖରେ ପ୍ରଥମ ତିନିଜଣ ମାନବ ଯାତ୍ରୀ !!!

ଏବଂ ତାପରେ ସବିସ୍ତାରେ ବର୍ଣ୍ଣିତ କରାହେଲା ସେଇ ଚମକପ୍ରଦ କାହାଣୀ ।

ପୃଥିବୀର ଆଲୋକ, ବାୟୁ, ଆକାଶ, ମାଟି, ଆତ୍ମୀୟସ୍ୱଜନ ଓ ମାନବ ସମାଜ—ସମସ୍ତଙ୍କଠାରୁ ବିଦାୟ ନେଇ ସେଇ ବିଶାଳ ଗୋଲକ ମଧ୍ୟରେ ପ୍ରବେଶ କଲେ ଅଧ୍ୟାପକ ଆର୍ଦୋ, କ୍ୟାପ୍‌ଟେନ ନିକଲ ଏବଂ ଇମ୍ପେ ବର୍ବିକେନ ପ୍ରୟୋଜନୀୟ ଜିନିଷପତ୍ର ସହିତ ସେମାନେ ବର୍ବିକେନଙ୍କ ପ୍ରିୟ କୁକୁର ନେପଚ୍ୟୁନ ଓ ସାଟେଲାଇଟ ଦୁଇଟିଙ୍କୁ ମଧ୍ୟ ସାଙ୍ଗରେ ନେଲେ ।

ଗୋଳା ଭିତରକୁ ପ୍ରବେଶ କରି ପ୍ରଥମେ ସମସ୍ତେ କିଛି ସମୟ ନିର୍ବାକ ହୋଇ ବସି ରହିଲେ । କେବଳ ଯେ କଥା କହିବା ଭଳି କୌଣସି କଥା ନପାଇ ସେମାନେ ଯେ ଚୁପଚାପ ରହିଲେ ସେକଥା ନୁହେଁ, ଏମିତିରେ ବି ସେମାନେ କଥା କହିବାକୁ ଚାହୁଁ ନଥିଲେ, ଇଚ୍ଛା ହେଉ ନଥିଲା କିଛି କହିବା ପାଇଁ, କିନ୍ତୁ ଏପରି ଉତ୍କଣ୍ଠା ଅବସ୍ଥାରେ ବେଶୀ ସମୟ ଚୁପଚାପ ବସି ହୁଏନା, ଏକ ସମୟରେ ମଣିବନ୍ଧର ଘଣ୍ଟାକୁ ଚାହିଁ ନୀରବତା ଭାଙ୍ଗି ଅଧ୍ୟାପକ ଆର୍ଦୋ କହିଲେ, 'ଆଉ ମାତ୍ର ଦଶମିନିଟ ବାକି, ତାପରେ ଆମମାନଙ୍କୁ ନେଇ ଗୋଲକଟି ଶୂନ୍ୟକୁ ଛୁଟିକି ବାହାରିଯିବ ।'

ଆମେମାନେ ତାହେଲେ ସତରେ ଚନ୍ଦ୍ରଲୋକକୁ ଯାତ୍ରା

କରୁଛେ ? କ୍ୟାପ୍‌ଟେନ ନିକଲସଙ୍କର ସେମିତ ଅବସ୍ଥାଟା କୌଣସି ମତେ ବିଶ୍ୱାସ ହେଉ ନଥିଲା । ସେକଥା ସେ ମୁହଁ ଖୋଲି କହି ଦେଲେ ବି, 'ମୋର ତ ସତରେ ମୋଟେ ବିଶ୍ୱାସ ହେଉନି ।'

କେବଳ ଇମ୍ପେ ବର୍ବିକେନଙ୍କର ମୁଖମଣ୍ଡଳରେ ଖୁସିର ଆଭା ଝଲକି ଉଠୁଥିଲା । ଟିକେ ହସି ଦେଇ ସେ କହିଲେ, କେମିତି ହେବ କୁହନ୍ତୁ ? ଚନ୍ଦ୍ରକୁ ଗୋଳା ପଠାଇବାର କଥା କଳ୍ପନା କଲେବି ମୁଁ କେବେ ସ୍ୱପ୍ନରେ ସୁଦ୍ଧା ଚନ୍ଦ୍ରରେ ପଦାର୍ପଣ କଥା ଭାବିନି । ମୋର ମନେହୁଏନା । ମସିଁୟେ ଆର୍ଦାଙ୍କ ବ୍ୟତୀତ ଆଉ କାହାର ମଗଜରେ ଏ ପ୍ରକାର ଆଶ୍ଚର୍ଯ୍ୟ ଇଚ୍ଛା ଗଜେଇ ନଥାନ୍ତା । ତେବେ ଶେଷ ପର୍ଯ୍ୟନ୍ତ ଆମେମାନେ ଯଦି ଚନ୍ଦ୍ରରେ ପହଞ୍ଚି ନପାରନ୍ତି, ତେବେ ମୁଁ ଏଇ କଥା ଜାଣି ଖୁସି ହେଲିଯେ, ମୋର ଏତେଦିନର ସ୍ୱପ୍ନ ଅନ୍ତ ଏତେଦିନ ପରେ ସଫଳ ହେବାକୁ ଯାଉଛି ।

'ଆପଣମାନେ ନ ହସିଲେ ମୁଁ ସତକଥାଟା କହନ୍ତି', ଧୀର ସ୍ୱରରେ ମାଇକେଲ ଆର୍ଦା କହିଲେ, 'ମୋର କିନ୍ତୁ ଗ୍ରେଟ ପିରାମିଡ଼ ଉପରେ ନାଚିବାକୁ ଇଚ୍ଛା—।'

ଅଧ୍ୟାପକ ଆର୍ଦା ମୁହଁର କଥା ଆଉ ଶେଷକରି ପାରିଲେ ନାହିଁ । ହଠାତ୍ ପ୍ରଚଣ୍ଡ ସ୍ୱରରେ କମ୍ପି ଉଠିଲା ଗୋଳାଟା, ସତେ ଯେମିତି ବାହାରେ ସୃଷ୍ଟି ହେଉଛି ଏକ ପ୍ରବଳ ପ୍ରଳୟ । ନିଜ ନିଜର ଆସନରୁ ଛିନ୍ନବିଚ୍ଛିନ୍ନ ହୋଇ ତୀବ୍ର ବେଗରେ ଛିଟିକି ପଡ଼ିଲେ । ଛିନ୍ନବିଚ୍ଛିନ୍ନ ମଜବୁତ୍ ଦେଓ୍ୟାଲ ଦେହରେ ଏତେ ଜୋରରେ ଧକ୍କା ଖାଇଲେ ଯେ, ମୁଣ୍ଡ ତାଙ୍କର ଘୁରାଇ ଦେଲା, ଚେତନା ବିଲୁପ୍ତ ହୋଇଯିବ ଯେମିତି । ଆଖି ଆଗରେ ସବୁ ଝାପ୍‌ସା ଦେଖାଗଲା, ସତେ ଯେମିତି କିଏ ପତଳା କୁହୁଡ଼ିର ଚାଦରରେ ସବୁ ପଦାର୍ଥକୁ ଘୋଡ଼ାଇ ଦେଇଗଲା ।

ଯଦିଓ ମୁଣ୍ଡଟା ଘୁରାଇ ଦେଉଥିଲା, ତଥାପି ପ୍ରଥମେ ସବୁ

ଫେରି ପାଇଲେ ଅଧ୍ୟାପକ ଆର୍ଦ୍ଦା । ଗୋଲକ ମଧ୍ୟରେ କୌଣସି ମତେ ସ୍ଥିର ହୋଇ ଛିଡ଼ା ହେବାର ଚେଷ୍ଟା କରୁ କରୁ ସେ ନସ୍ରେଳ କଣ୍ଠରେ କହିଲେ, 'ଶେଷରେ ଏଇ ସାମାନ୍ୟ ବିସ୍ଫୋରଣ କ'ଣ ମୋର ସମସ୍ତ ଶକ୍ତି ନିଃଶେଷ କରିଦେଲା !'

ନିକଲ୍ ସମ୍ଭାଳି ନେଇ କୌଣସି ପ୍ରକାର ସ୍ଥିର ହୋଇ ଛିଡ଼ା ହେଲେ ଆର୍ଦ୍ଦା । ଦେଖି ପାରିଲେ କ୍ୟାପଟେନ ନିକଲ୍ ଚଟାଣରେ ଗଡ଼ୁଛନ୍ତି । ତାଙ୍କୁ ଧରି ଉଠାଇବାକୁ ଚେଷ୍ଟା କଲେ ଆର୍ଦ୍ଦା । ତାଙ୍କ ହାତରେ ଭର ଦେଇ ଉଠି ଛିଡ଼ା ହେଉ ହେଉ କରୁଣ ସ୍ୱରରେ କ୍ୟାପ୍‌ଟେନ ନିକଲ୍ ପଚାରିଲେ 'ମୁଁ କେଉଁଠି ଅଛି, କିଛି ବୁଝି ପାରୁନି ।'

'ନିଜକୁ ମହାଶୂନ୍ୟର ଅଭିଯାତ୍ରୀ ବୋଲି ଭାବିବାକୁ ଆପଣଙ୍କୁ ନିଶ୍ଚୟ ଖୁବ୍ ବେଶୀ ଡେରି ହେବନି । ଏସବୁ ବିଷୟରେ ଖୁବ୍ ଶୀଘ୍ର ଅଭ୍ୟସ୍ତ ହୋଇଯାଇ ହେବ, କାରଣ ପଦେ ପଦେ ଯଥେଷ୍ଟ ଭାବରେ ପ୍ରମାଣ ମିଳିବ ଯେ ଆମ୍ଭେମାନେ କେଉଁଠି ଅଛନ୍ତି !' ଅର୍ଦ୍ଦା ଥଟ୍ଟା କରି କହିଲେ, 'ଏଥର ଶୀଘ୍ର ଆସନ୍ତୁ ତ, ବର୍ବିକେନଙ୍କର କ'ଣ ଦଶା ହୋଇଛି ଆବିଷ୍କାର କରି ଦେଖିବା ।'

ସେମାନଙ୍କ ସାହାଯ୍ୟରେ ନିଜକୁ କୌଣସି ପ୍ରକାର ସମ୍ଭାଳୁ ସମ୍ଭାଳୁ ବର୍ବିକେନ କହିଲେ, 'ସତ କହିବାକୁ ଗଲେ, ମୋ ମୁଣ୍ଡରେ ଯେମିତି ଆକାଶ ଭାଙ୍ଗି ପଡ଼ିଥିଲା । ଆଖି ଆଗରେ ସବୁ ଝାପ୍‌ସା ହୋଇ ଯାଇଥିଲା । ବର୍ତ୍ତମାନ ଅବଶ୍ୟ କୌଣସି ପ୍ରକାର ସମ୍ଭାଳି ନେଇଛି । ଗ୍ରହାନ୍ତର ଅଭିଯାନର ଇତିହାସରେ ପ୍ରଥମ ଅଭିଯାତ୍ରୀ ବୋଲି ଯେହେତୁ ଆମ୍ଭମାନଙ୍କର ନାମ ଉଜ୍ଜ୍ୱଳ ଅକ୍ଷରରେ ଲିପିବଦ୍ଧ ହେବ, ସେଇଥିପାଇଁ ଆମ୍ଭମାନଙ୍କର ହତୋତ୍ସାହ ହୋଇ ପଡ଼ିଲେ ଚଳିବ ନାହିଁ । କ୍ୟାପ୍‌ଟେନ ନିକଲ୍, ଦେଖନ୍ତୁ ତ, ଏଭିତରେ କେତେ ବାଟ ଆଗେଇଲେଣି ।

କ୍ୟାପ୍‌ଟେନ ନିକଲ୍ କହିଲେ, 'ଠିକ୍ ଆନ୍ଦାଜ କରି ପାରୁନି । ଆମେମାନେ ବର୍ତ୍ତମାନ ଗୋଲକର ଠିକ୍ ମଝିରେ । ଗୋଟାଏ ଜିନିଷ କିନ୍ତୁ ମୋତେ ଭାରି ଆଶ୍ଚର୍ଯ୍ୟ ଲାଗୁଛି । ବିସ୍ଫୋରଣର କୌଣସି ଶବ୍ଦ ମୁଁ ଶୁଣି ପାରିନି ।'

ଗୋଟିଏ ଘନ କାଚର ଝରକାର ଉପରସ୍ଥ ଧାତୁର ଆବରଣୀ ଉନ୍ମୋଚନ କରୁ କରୁ ମାଇକେଲ ଆର୍ଦାଁ ବର୍ବିକେନଙ୍କୁ ଆହ୍ୱାନ କରି କହିଲେ, 'ଦେଖନ୍ତୁ ତ ମିଷ୍ଟର ବର୍ବିକେନ, ବାହାରେ ବର୍ତ୍ତମାନ କିଛି ଦେଖିବାର ଜିନିଷ ଅଛି କି ନା !'

'କି ପ୍ରଚଣ୍ଡ ବେଗରେ ଆମେମାନେ ପୃଥିବୀ ଗ୍ରହ ଆଡ଼େଇ ଚାଲିଛନ୍ତି !' ସାଫଲ୍ୟର ଆନନ୍ଦାଲୋକରେ ବର୍ବିକେନଙ୍କର ମୁଖ ଉଦ୍ଭାସିତ ହୋଇ ଉଠିଲା । 'ଶେଷପର୍ଯ୍ୟନ୍ତ ସତକୁସତ ଆମେମାନେ ଚନ୍ଦ୍ରକୁ ଯାଉଛେ ?'

'ଆଚ୍ଛା ବର୍ବିକେନ, ଏଇ ବ୍ୟାପାରଟାର ଅର୍ଥ ମୋତେ ବୁଝାଇ ଦେଇ ପାରିବେ ?' କ୍ୟାପ୍‌ଟେନ ନିକଲ ପୁଣି ପଚାରିଲେ, 'ଆମ ଆକାଶ-ଯାନ କମାଣର ନଳରୁ ଛୁଟିକି ବାହାରି ଆସିଛି । କିନ୍ତୁ ସେଇ ପ୍ରଚଣ୍ଡ ବିସ୍ଫୋରଣର କୌଣସି ଶବ୍ଦ କାହିଁକି ଶୁଣିବାକୁ ମିଳିଲା ନାହିଁ ?'

ଟିକିଏ ଭାବି ବର୍ବିକେନ ହଠାତ୍ ଚିତ୍କାର କରି ଉଠିଲେ, 'ମୁଁ ବୁଝି ପାରିଛି ! ବୁଝିପାରିଛି କାହିଁକି ଆମେମାନେ ବିସ୍ଫୋରଣର କୌଣସି ଶବ୍ଦ ଶୁଣିପାରି ନାହାନ୍ତି । ଅସଲ ଘଟଣାଟା କ'ଣ ଜାଣନ୍ତି, କ୍ୟାପ୍‌ଟେନ ନିକଲ ? ଶବ୍ଦର ଗତିଠାରୁ ଆମେ ଯଥେଷ୍ଟ ବେଶୀ ଜୋରରେ ଛୁଟି ଚାଲିଛନ୍ତି । ଆମ ଆକାଶ-ଯାନର ଗତି ହେଲା ପ୍ରତି ସେକେଣ୍ଡରେ ବାରହଜାର ଫୁଟ । ସୁତରାଂ ସ୍ୱାଭାବିକ ଭାବରେ ଶବ୍ଦ ଆମମାନଙ୍କ ପାଖରେ ପହଞ୍ଚି ପାରିନାହିଁ ଏବଂ କହିବା ବାହୁଲ୍ୟ ଶବ୍ଦ କେବେହେଲେ ଆମ ଛୁଇଁ ବି ମାଡ଼ି ପାରିବ ନାହିଁ ।

'ଅବିସ୍ମରଣୀୟ ମୁହୂର୍ତ୍ତ !' ନିକଲ କହିଲେ ।

'ସମସ୍ତ ଜୀବନଟା ଏଇରକମ ଚରମ ମୁହୂର୍ତ୍ତ ଦ୍ୱାରା ଗଠିତ ନୁହେଁ ବୋଲି, ଏଇ ମୁହୂର୍ତ୍ତର ସମଗ୍ର ଆନନ୍ଦ ଆପଣ ଉପଭୋଗ କରି ପାରୁଛନ୍ତି, କ୍ୟାପ୍ଟେନ ନିକଲ । ଏହା ଯଦି ହୋଇ ନଥାନ୍ତା ତାହେଲେ ଏତେ ଆନନ୍ଦ କଣ ଆପଣଙ୍କର ହୁଅନ୍ତା ?' ଆର୍ଦ୍ଦି ଗମ୍ଭୀର ନହୋଇ ଦାର୍ଶନିକ ହେବାର ଚେଷ୍ଟା କଲେ ।

ବର୍ଟିକେନ ତୀକ୍ଷ୍ଣ କଣ୍ଠରେ କହିଲେ, 'ହାରିଲେ ଆମର ଚଳିବ ନାହିଁ । ଯେକୌଣସି ପ୍ରକାରେ ଶୃଙ୍ଗ ଆମକୁ ଜୟ କରିବାକୁ ହେବ ।'

'ମିଛରେ ଏତେ ଖପୁଛନ୍ତି କାହିଁକି ?' ବର୍ଟିକେନଙ୍କୁ ଉତ୍ସାହିତ କରିବାକୁ ଚେଷ୍ଟା କଲେ ନିକଲ । 'ଅଜଣାରେ ଏତେ ନିରାଶ ହେବେନି । ଶୃଙ୍ଗ ଆମେ ନିଃସନ୍ଦେହରେ ଜୟ କରିବା । ଏତେ ଦୂର ଯେତେବେଳେ ଆଗେଇଲେଣି, ବ୍ୟର୍ଥତା ନିଶ୍ଚୟ ଆମେ ବରଣ କରିବା ନାହିଁ ।'

'ଏଟା କେବଳ ଆମେ ଆଶା କରି ପାରନ୍ତି, କ୍ୟାପଟେନ ନିକଲ । କିନ୍ତୁ ଏତେ ପରିମାଣରେ ନିଶ୍ଚିନ୍ତ ହୋଇ ପାରିବା ନାହିଁ ।' ଅଧ୍ୟାପକ ଆର୍ଦ୍ଦି କହିଲେ, 'ତୀର ନିକଟକୁ ଆସି ମଧ୍ୟ ତରି ବୁଡ଼ିଯାଏ । ଅଜଣା ଆକାଶରେ ଯାତ୍ରା ଚାଲିଛି ଆମର, ଯେଉଁ ଆକାଶରେ କଳ୍ପନାର ଅବାଧ ବିହାର ଏତେଦିନ ଯାଏ ଚାଲୁଥିଲା, ସେଇଥିରେ ଆମେମାନେ ଆଜି ଖାପି ଚାଲିଛନ୍ତି । ଏତେ ଉଚ୍ଚରେ ଚାଲିଛନ୍ତି ଯେ ମଣିଷର କଳ୍ପନା କେବେ ଏଠି ପହଞ୍ଚି ପାରିନାହିଁ । ଅଜଣା କେତେ ବିପଦ ଅପେକ୍ଷା କରି ରହିଛି ଆମପାଇଁ, ସୁତରାଂ ଆମେମାନେ କେବେହେଲେ ନିଶ୍ଚିନ୍ତ ହୋଇ ପାରିବା ନାହିଁ ।

ଦୁଇ ଆଖିରେ ପ୍ରଶଂସା ନେଇ କ୍ୟାପ୍ଟେନ ନିକଲ ବର୍ଟିକେନଙ୍କୁ

ସ୍ମୃତିଲେ, 'ଆପଣଙ୍କପର ପ୍ରତିଭାବାନଙ୍କ ନିକଟରୁ ବାଜ ଦ୍ୱାରବାରରେ ବ ଗୌରବ ଅଛି । ମୋର ପୂର୍ବ ଧୃଷ୍ଟତା ପାଇଁ ମୋତେ କ୍ଷମା କରିବେ, ବର୍ଣ୍ଣିକେନ ।'

ନିକଲଙ୍କ କରମର୍ଦ୍ଦନ କଲେ ବର୍ଣ୍ଣିକେନ । କହିଲେ, 'ଜଣ ଯେ କହନ୍ତୁ ଆପଣ ! ଆପଣଙ୍କର ଏବଂ ଅଧ୍ୟାପକ ଆର୍ଦ୍ଧାଙ୍କର ସାହଚର୍ଯ୍ୟରେ ମୋର ସ୍ୱପ୍ନ ଆଜି ସଫଳ ହେବାକୁ ଯାଉଛି ।'

ଏତେଦିନ ପର୍ଯ୍ୟନ୍ତ "ମନୁଷ୍ୟମାନେ ଯେଉଁ ଜ୍ୟୋତିଷ୍କ ମଣ୍ଡଳରେ କଳ୍ପନା ବିହାର କରୁଥିଲେ, ଆଜି ସେଠାକୁ ସଶରୀରେ ଯାତ୍ରା କରୁଛନ୍ତି ସେଇ ମାନବ ସମାଜର ମହତ ତିନୋଟି ପ୍ରତିନିଧି। ଏଥିପାଇଁ ଯେଉଁ ପ୍ରଶଂସା ମିଳିଲା ତାହା କେବଳ ଗନକ୍ଲବର ହିଁ ପ୍ରାପ୍ୟ। ଅଜସ୍ର ଅଭିନନ୍ଦନ ପତ୍ର ସେକ୍ରେଟାରୀ ମ୍ୟାଷ୍ଟସନଙ୍କ ନିକଟକୁ ଆସିବାକୁ ଲାଗିଲା। ସେଇ ସବୁ ଅଭିନନ୍ଦନ ପତ୍ର ଗ୍ରହଣ କରୁକରୁ ମ୍ୟାଷ୍ଟସନ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଲେ। ଏଇ ଅଭିନନ୍ଦନପତ୍ର କେବଳ ଆମେରିକାର ସବୁଗୁଡ଼ିକ ଗୃହରୁ ଆସିଲା ନାହିଁ, ଆସିଲା ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ରୁଷିଆ, ଚୀନ୍, ଜାପାନ ଓ ଭାରତ ବର୍ଷରୁ। ପୂର୍ବ ଓ ପଶ୍ଚିମର ସମସ୍ତ ଦେଶ ସମୂହରୁ ଅଜସ୍ର ଅଭିନନ୍ଦନ ଓ ଶୁଭେଚ୍ଛା ବାର୍ତ୍ତାମାନ ଅନବରତ ଆସିବାକୁ ଲାଗିଲା। ଅଗଣିତ ଏଇ ଅଭିନନ୍ଦନ ପତ୍ର ଓ ଶୁଭେଚ୍ଛା ବାର୍ତ୍ତାଗୁଡ଼ିକ ବଣ୍ଟିବାଣ୍ଟି କରି ଗନକ୍ଲବରେ ପହଞ୍ଚାଇବା ପାଇଁ ଡାକଘରର ଲୋକମାନେ ମଧ୍ୟ କ୍ଳାନ୍ତ ହୋଇ ପଡ଼ିଲେ।

କେବଳ ଅଭିନନ୍ଦନରେ ବା ଶୁଭେଚ୍ଛାରେ ଶେଷ ନୁହେଁ। ଚନ୍ଦ୍ର ଯାତ୍ରୀମାନଙ୍କର ଖବର କ'ଣ ସେମାନେ ବର୍ତ୍ତମାନ କେଉଁଠି ଅଛନ୍ତି, କ'ଣ କରୁଛନ୍ତି—ଇତ୍ୟାଦି ଖବର ଜାଣିବାକୁ ଆତୁର ଅସଂଖ୍ୟ ଚିଠି ଆସିବାକୁ ଲାଗିଲା। 'କାରଣ ଅକାରଣରେ ଲୋକମାନେ କେତେ

ଚିଠି ଲେଖି ପାରନ୍ତି—'ଏଇକଥା ଭାବୁଭାବୁ ଭାଗି ଗଲେ ମ୍ୟାଟସନ । ଗନକ୍ଲବର ଆକାଶଯାନର କ'ଣ ହେଲା ଜାଣିବା ପାଇଁ ସେ ଦୂରବୀକ୍ଷଣ ଯନ୍ତ୍ର ପାଖରେ ବସିବାପାଇଁ ସମସ୍ତ ପାଉ ନଥିଲେ । ସେଥିପାଇଁ ଏଇ ଚିଠିପତ୍ର ଗୁଡ଼ିକ ପୂର୍ଣ୍ଣତଃ ଦାୟୀ ବୋଲି ସେ ଭାବୁଥିଲେ । ଏଇସବୁ ଚିଠିପତ୍ର ନେଇ ଅଯଥା ସମୟ ନଷ୍ଟ କରିବାକୁ ସେ ଆଦୌ ଇଚ୍ଛା କରୁ ନଥିଲେ । ତେଣୁ ସିଦ୍ଧାନ୍ତ ଗ୍ରହଣ କଲେଯେ, "ନା, ଆଉ ସେ ଚିଠିପତ୍ର ପଢାପଢି କରିବ ନାହିଁ କେଉଁଠି କିଏ କରୁଛି କାମ କରିବ ନା ଏଇସବୁ ଅଯଥା କଥାରେ ମୁଣ୍ଡ ଖେଳେଇବ ! ଯେତେ ଚିଠିପତ୍ର ଆସିବାର କଥା ଆସୁ, ଝୁଡ଼ି ପରେ ଝୁଡ଼ି ଭର୍ତ୍ତି ହୋଇ ଯାଉ ! ମୁଁ ଏଥର ଦୂରବୀକ୍ଷଣ ନିକଟରେ ଯାଇ ବସୁଛି, ଆଉ ସ୍ଥାନ ବି ଘୁଞ୍ଚିବି ନାହିଁ । ସେମାନେ ଯାତ୍ରା କରିବା ପରେ ତିନିଦିନ ଅତିବାହିତ ହୋଇଗଲା, କିନ୍ତୁ କେମ୍ବ୍ରିଜ ମାନମନ୍ଦିରର ଘୋଷଣା ବ୍ୟତୀତ ସେମାନଙ୍କ ବିଷୟରେ ଆଉ କିଛି ଜାଣି ପାରିଲି ନାହିଁ । ନାଃ, ଅଡ଼ି ଏ ଚିଠିର ଦାୟିତ୍ୱ ମୁଣ୍ଡକୁ ନେବିନି, ଏଥର କେବଳ ଦୂରବୀକ୍ଷଣ ଯନ୍ତ୍ରକୁ ସମ୍ବଳ କରିବାକୁ ହେବ" ।

ହଠାତ୍ ବର୍ବିକେନ ଆର୍ତ୍ତସ୍ୱରରେ ଚିତ୍କାର କରି ଉଠିଲେ, 'ଆରେ ! ଏଟା କ'ଣ ? ସେଇଟା କି ଜିନିଷ ?

ଅଧୀପର୍ବି ଅର୍ଦାନ୍ଙ୍କ କଣ୍ଠରେ ଉତ୍ସୁକ ପ୍ରତିଧ୍ୱନି, 'ଦେଖନ୍ତୁ ! ଦେଖନ୍ତୁ ! ଆମମାନଙ୍କର ମୂର୍ତ୍ତିମାନ ଧ୍ୱଂସ ଆଗେଇ ଆସୁଛି ।' ଭଲ

ଭାବରେ ବାହାରକୁ ଚାହିଁ ଦେଖିବା ପାଇଁ ତିନିଜଣ ଚଟ୍‌କରି କାଚ ଝରକା ନିକଟକୁ ଆଗେଇ ଆସିଲେ ।

ଆମ ଗୋଲକ ଆଡ଼କୁ ପ୍ରଚଣ୍ଡ ବେଗରେ ସେଇ ଜ୍ୱଳନ୍ତ ଅଗ୍ନି ପିଣ୍ଡଟା !' ଭୟରେ କମ୍ପି ଉଠିଲା କ୍ୟାପ୍ଟେନ ନିକଲଙ୍କ କଣ୍ଠ । 'ଦେଖୁଛ, ସିଧା ଆମର ଆଡ଼କୁ ଆସୁଛି । ଆଉ କେଇ ମିନିଟ ମଧ୍ୟରେ ତା ସାଙ୍ଗରେ ସଂଘର୍ଷ ହେବ ! ଆଉ ଆମର ରକ୍ଷା ନାହିଁ, ଧ୍ୱଂସ ଅନିବାର୍ଯ୍ୟ !'

ଯେଉଁ ଭୟଙ୍କର ଅଗ୍ନି ଗୋଲକଟି ଦେଖି ତିନିଜଣ ଆତଙ୍କିତ ହୋଇ ଉଠିଥିଲେ, ସେଇଟି ହେଲା ପୃଥିବୀର ଚତୁର୍ଦ୍ଦିଗରେ ଘୂର୍ଣ୍ଣାୟମାନ ଜ୍ୱଳନ୍ତ ଧାତୁପିଣ୍ଡ ଗୁଡ଼ିକ ମଧ୍ୟରୁ ଗୋଟିଏ । ମହାଶୂନ୍ୟରେ ପୃଥିବୀର ଚତୁର୍ଦ୍ଦିଗରେ ଅସଂଖ୍ୟ ଛୋଟ ଛୋଟ ଧୂମକେତୁ ଓ ଉଲ୍‌କା ପ୍ରଭୃତି ଆବର୍ତ୍ତନ କରନ୍ତି । ସେଥି ମଧ୍ୟରୁ ଗୋଟିଏ ନିଜ ଗତିପଥରୁ ଛିଟିକି ବାହାରି ଯାଇ ଆକାଶଯାନର ଗତିପଥରେ ଛୁଟି ଆସୁଛି, ଏଇ କକ୍ଷଚ୍ୟୁତ ଜ୍ୱଳନ୍ତ ଉଲ୍‌କାଟି ସଙ୍ଗରେ ସଂଘାତ ଘଟିଲେ ଆଉ ରକ୍ଷା ନାହିଁ । ଏବଂ ଏଇ ସଂଘାତର କେବଳ ମାତ୍ର ଗୋଟିଏ ଅର୍ଥ ହୋଇ ପାରେ, ସରଳ ଭାଷାରେ ଯାହାକୁ କହନ୍ତି ମୃତ୍ୟୁ । ଯଦି ଥରେ ଧକ୍‌କା ଲାଗେ ଏଇ ଉଲ୍‌କା ସାଙ୍ଗରେ, ଏକଦମ ଚୁରମାର ହୋଇଯିବ ଗନକ୍ଲଦର ଏଇ ବିରାଟ ଗୋଲକଟି ।

ବିଜ୍ଞାନର ଗୌରବମୟ ଅଭିଯାନରେ ଅଂଶ ଗ୍ରହଣ କରିବାକୁ ଯାଇ, ଯୁଗ, ଯୁଗ ଏହିପରି ଭାବରେ ମୃତ୍ୟୁକୁ ବରଣ କରି ନିଅନ୍ତି ବୈଜ୍ଞାନିକମାନେ ସେମାନଙ୍କର ଏଇ ପ୍ରବଳ ଓ ଭୀଷଣ ବିନାଶକୁ ଅବଲମ୍ବନ କରି ଯୁଗ ଯୁଗ ଧରି ଗଢ଼ି ଉଠିଛି ସଭ୍ୟତାର ନଭଶ୍ଚୁମ୍ବି ପ୍ରାସାଦ ।

ବ୍ୟଗ୍ରକଣ୍ଠରେ କ୍ୟାପ୍ଟେନ ନିକଲ କହିଲେ, ବର୍ତ୍ତମାନ ଉପାୟ ?

'ଉପାୟ ?' କରୁଣ ଭାବରେ ହସିଲେ ବର୍ଦ୍ଦିକେନ । ଈଶ୍ୱରଙ୍କୁ

ଡାକିବା ଛଡ଼ା ଏଇ ମୁହୂର୍ତ୍ତରେ ଆଉ କୌଣସି ଉପାୟ ମୁଁ ଦେଖି ପାରୁନ । ଆମ ପାଖରେ ଅବଶ୍ୟ ଅନେକଗୁଡ଼ିଏ ହବାଇ ଅଛି । ବିଶେଷ ଭାବରେ ତିଆରି ହୋଇ ଥିବାରୁ ସେଗୁଡ଼ିକର ଶକ୍ତି ମଧ୍ୟ ପ୍ରଚୁର । ସେଇ ହବାଇ ଗୁଡ଼ିକର ସାହାଯ୍ୟରେ ହୁଏତ ଆକାଶ-ଯାନର ଗତିପଥ ବଦଳାଇ ନେଇ ବଞ୍ଚିବାର ଏକ କ୍ଷୀଣ ପ୍ରୟାସ କରାଯାଇ ପାରନ୍ତା, କିନ୍ତୁ ବର୍ତ୍ତମାନ ସେଇ ହବାଇଗୁଡ଼ିକ ବ୍ୟବହାର କରିବା ସମୟ ଟିକିଏ ବି ନାହିଁ । ଦେଖୁ ନାହାନ୍ତି କି ପ୍ରଚଣ୍ଡ ବେଗରେ ଉଲ୍‌କାଟା ଆମଗୋଲକଟି ପାଖକୁ ଆସି ଗଲାଣି ।

ଆର୍ଦ୍ଧାଁ ପଚାରିଲେ, 'ବର୍ତ୍ତମାନ ତାହେଲେ କ'ଣ କରାଯିବ ?

'କେବଳ ମୃତ୍ୟୁପାଇଁ ପ୍ରତୀକ୍ଷା କରିବା ଛଡ଼ା ଆଉ କିଛି ଆମେ କରି ପାରିବା ବୋଲି ଜଣାଯାଉଛି ।' ବର୍ବିକେନ କଥାବାର୍ତ୍ତାରେ ବ୍ୟସ୍ତରହି ଉଲ୍‌କାଟାକୁ ଭୁଲି ଯିବାର ବ୍ୟର୍ଥ ଚେଷ୍ଟା କଲେ । ସେ ଆମର ଗୌରବମୟ ଅଭିଯାନର ପରିସମାପ୍ତି ଯେ ଏପରି ଭାବରେ ଘଟିବ, ଏହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ପାରି ନଥିଲି ।

ନିଷ୍ଠୁର ହସର ଏକ କ୍ଷୁଦ୍ର ରେଖା ଅର୍ଦ୍ଧାଙ୍କ ଓଠରେ ଖେଳିଗଲା । 'ଭାବିଲେ ଆଉ ଲାଭ କ'ଣ ହେବ, କୁହନ୍ତୁ ! ବିଜ୍ଞାନର ଶହୀଦ ଭାବରେ ଅମର ହେବାକୁ ଯାଉଛନ୍ତି ଆମେମାନେ, ସେଥିପାଇଁ ଆମମାନଙ୍କର ଯଥାମତ ଆନନ୍ଦ କରିବା ଉଚିତ ।'

ଅର୍ଦ୍ଧା ଯଦିଓ ମୁହଁରେ ଏକଥା କହିଲେ, ତଥାପି ଏ ପ୍ରକାର ବିନାଶର ସମ୍ମୁଖୀନ ହେବାକୁ ତାଙ୍କୁ ଖୁବ୍ ଭଲ ଲାଗୁଥିଲା । ଏକଥା ଅନ୍ୟମାନଙ୍କର ମନେହେଲାନି ।

ଗନକ୍ତବର ସର୍ବୋଚ୍ଚ ଇମେ ବର୍ଚ୍ଚିକେନ, ଫସ୍ତୀ ବୈଜ୍ଞାନିକ ମାଇକେଲ୍ ଆର୍ଦା ଏବଂ ଶିଚମନ୍ତ୍ରର କ୍ୟାପ୍‌ଟେନ ନକଲ ଆକାଶରେ ଯେତେବେଳେ ମୃତ୍ୟୁର ପ୍ରତୀକ୍ଷା କରୁଛନ୍ତି, ପୃଥିବୀରେ ସେତେବେଳେ ଯୁକ୍ତରାଜ୍ୟର ବାଲ୍‌ଟିମୋରରେ ଗନକ୍ତବର ଅଟ୍ଟାଳିକାରେ ବସି ମ୍ୟାଟସନ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଆକାଶ ପଥ ପର୍ଯ୍ୟବେକ୍ଷଣ କରୁଥିଲେ ।

ମର୍ଚ୍ଚିସନ ପଚାରିଲେ, 'ବର୍ଚ୍ଚିକେନ ଇତ୍ୟାଦିଙ୍କର ଖବର କ'ଣ ଦେଖୁଛନ୍ତି ? କ୍ୟାମ୍ବ୍ରିଜ ମାନମନ୍ଦିରର ଘୋଷଣା ବ୍ୟତୀତ ସେମାନଙ୍କ ସମ୍ବନ୍ଧରେ ଆଉ କିଛି ଶୁଣିନି ।'

'କିଛି ତ ଦେଖି ପାରୁନି ।' ମ୍ୟାଟସନ କ୍ଷୋଭର ସହିତ କହିଲେ । 'ସେମାନଙ୍କ ଯାନ୍‌ତ୍ରିକ ବିସ୍ଫୋରଣ ଫଳରେ ଯେଉଁ ଧୂଆଁର ସୃଷ୍ଟି ହୋଇଥିଲା ସେଥିରୁ ଆକାଶ ଏ ପର୍ଯ୍ୟନ୍ତ ପରିଷ୍କାର ହୋଇନି । ଏବେବି କିଛି କିଛି ଧୂଆଁ ଆକାଶରେ ଜମି ରହିଛି । ମୋର ଏଇ ଦୂରବୀକ୍ଷଣ ଯନ୍ତ୍ରଟାର କ୍ଷମତା ଏତେ ପ୍ରବଳ ନୁହେଁ ଯେ, ଏଇ ଅପରିଚ୍ଛନ୍ନ ଧୂଆଁ ଭେଦକରି ମୁଁ ଆକାଶ-ଯାନଟା ଦେଖି ପାରିବି ।

'ଏବେ ବି କିଛି ଦେଖା ଯାଉନି ?' ମର୍ଚ୍ଚିସନଙ୍କ କଣ୍ଠରେ ଅବଶୋଷ ବଦଳରେ ରାଗ ପରିସ୍ଫୁଟ ହେଲା । 'କି ଅସୁବିଧା ! ତ.'ହେଲେ ଏମାନଙ୍କର କ'ଣ ହେଲା ବୁଝିବା କିପରି ?'

'ଅନ୍ତତଃ କିଛି ସମୟ ଧୈର୍ଯ୍ୟ ଧରି ଅପେକ୍ଷା ନକଲେ କିଛି ବୁଝି ହେବନି । ଆଗେ ଆକାଶ ପରିଷ୍କାର ହେଉ, ତାପରେ ସେମାନଙ୍କର କ'ଣ ହେଲା ଦେଖାଯିବ ।'

'କେତେବେଳେ ଆକାଶ ପରିଷ୍କାର ହେବ ତାରତ କିଛି ଠିକ୍ ଠିକଣା ଦେଖୁନି । ହୁଏତ ଆକାଶ ପରିଷ୍କାର ହେବା ବେଳକୁ ସେମାନେ ଚନ୍ଦ୍ରରେ ପହଞ୍ଚି ଯାଇ ଥିବେ । ଆପଣ ବରଂ ଭଲ ଭାବରେ ଚେଷ୍ଟାକରି ଦେଖନ୍ତୁ ।'

'ମୁଁ କ'ଣ ଆଉ ଇଚ୍ଛାକରି ଖରାପ ଭାବରେ ଦେଖୁଛି ?' ମ୍ୟାଟସନ ମୃଦୁ ମୃଦୁ ହସିଲେ । ମର୍ଚିସନଙ୍କର ଧୈର୍ଯ୍ୟ ହୀନତାର କାରଣ ସେ ସ୍ପଷ୍ଟ ଭାବରେ ବୁଝି ପାରୁଥିଲେ, କାରଣ ତାଙ୍କ ନିଜ ମନରେ ତ ସେଇ ଏକମ କୌତୁହଳ ଓ ଉତ୍ତେଜନା । ତଥାପି ସବୁ ପ୍ରକାର ଶୃଙ୍ଖଳା ବଜାୟ ରଖିବାର ଚେଷ୍ଟାକରି କହିଲେ, 'ଆଖି ଆଗରେ କେବଳ କଳା ମେଘର ଧାଁ ଦଉଡ଼ । କେବଳ ମେଘ ଆଉ ମେଘ, ଆଉ କିଛି ଦେଖାଯାଉନି ।'

'ମୋର କିନ୍ତୁ ଟିକଏ ବି ସହୁନି ।' ମର୍ଚିସନ କହିଲେ, 'ଆପଣ ବରଂ ଟିକେ ଘୁଞ୍ଚି ବସନ୍ତୁ । ମୁଁ ନିଜେ ଘଟଣାଟା କ'ଣ ଦେଖେ ।'

ଅନିଚ୍ଛା ସତ୍ତ୍ୱେ ଦୂରବୀକ୍ଷଣ ନିକଟରୁ ଘୁଞ୍ଚିଗଲେ ମ୍ୟାଟସନ ଓ କହିଲେ 'ଆପଣଙ୍କୁ କିନ୍ତୁ ଖୁବ୍ ଅଳ୍ପ ସମୟ ପାଇଁ ଦେଖିବାର ସୁଯୋଗ ଦେଉଛି, ଏକଥା ମନେ ରଖିଥିବେ । ଏଇକ୍ଷଣି କିନ୍ତୁ ଘୁଞ୍ଚି ବସିବାକୁ ହେବ । ମୁଁ କିନ୍ତୁ କୌଣସି ମତେ ଏଇ

ଦୂରବୀକ୍ଷଣକୁ ଆଖିରୁ ଅନ୍ତର କରିବ ନାହିଁ ! ଆହା ଆମ ଚର୍ମଚକ୍ଷୁ ଯଦି କଳ୍ପନା ପରି ଶକ୍ତିମାନ ହୋଇଥାନ୍ତା !'

ଠିକ୍ ସେଇ ମୁହୂର୍ତ୍ତରେ ହଜାର ହଜାର ମାଇଲ ଉପରେ ମହା ଶୂନ୍ୟରେ ଉଲ୍କା ଓ ଆକାଶଯାନ ମଧ୍ୟରେ ସଂଘର୍ଷ ଘଟିଲା ପ୍ରାୟ ।

ଚକ୍ଷୁର ପଲକରେ ଗଜକୁମ୍ବର ଗୋଲକଟି କମ୍ପିଉଠିଲା । ମନେହେଲା ବାହାରେ ସତେ ଯେମିତି ପ୍ରଳୟ ଆରମ୍ଭ ହୋଇଛି । ଭୀଷଣ ବେଗରେ ଆସନରୁ ଛିଟିକି ପଡ଼ିଲେ ତିନିଜଣ । ଆଖି ଆଗରେ ସବୁ ଝାପସା ଦେଖାଗଲା, ଚେତନାହୀନ ତିନିଜଣ ଆକାଶ ଯାତ୍ରୀ ସଂଜ୍ଞାହୀନ ହୋଇ ଆକାଶଯାନର ଚଟାଣରେ ପଡ଼ି ରହିଲେ ।

ମିନିଟ କେତୋଟି ପରେ ଯେତେବେଳେ ଚେତନା ଫେରି ଆସିଲା, ଅବାକ୍ ହୋଇଗଲେ ତିନିଜଣ । ପ୍ରଥମେ କଥାକହି ପାରିଲେ ନାହିଁ, ବିସ୍ମିତ ଭାବରେ ପରସ୍ପର ଆଡ଼କୁ କେବଳ ଚାହିଁ ରହିଲେ । ତାପରେ ତିନିଜଣ ହଠାତ୍ ଏକ ସାଙ୍ଗରେ ବାହାର ଦୃଶ୍ୟ ଦେଖିବା ପାଇଁ କାଚ ଝରକା ନିକଟକୁ ଛୁଟି ଆସିଲେ ।

ଦୂରରେ ଗୋଟିଏ ସବୁଜ ଆଲୋକ ପରି ଜୁଳୁ ଜୁଳୁ କରୁଛି ଛାଡ଼ି ଆସିଥିବା ପୃଥିବୀ, ଆଉ ମହାଶୂନ୍ୟରେ ଏଣେ ତେଣେ ଅସଂଖ୍ୟ ନକ୍ଷତ୍ର ସ୍ଥିରପରି ଜଳୁଛି, ଅନେକ ଦୂରରେ ସେମାନଙ୍କ ଗନ୍ତବ୍ୟ ସ୍ଥଳ ଚନ୍ଦ୍ର ସେମିତି ସୁନେଲି ଆଲୋକ ବିକିରଣ କରୁଛି ।

କ୍ୟାପ୍ଟେନ ନିକଲ ପ୍ରଥମେ କଥା ଆରମ୍ଭ କଲେ, 'ସତରେ ତାହେଲେ ଆମର ମୃତ୍ୟୁ ହୋଇନ ।'

ବର୍ଟିକେନ ଜବାବ ଦେଲେ, 'ନା । ଏମିତିକ ଉଲ୍କାଟା ସାଙ୍ଗରେ.ବ ସଂଘର୍ଷ ହୋଇନ । ଏହା ନିଶ୍ଚୟ ଦେବତାଙ୍କର ଦୟା

ସେଥିପାଇଁ ଶେଷ ମୁହୂର୍ତ୍ତରେ ଆମମାନଙ୍କର କମ୍ଭା ଉଲ୍କାଟାର ପରିକ୍ରମାର ପଥ କିଞ୍ଚିତ ପରିବର୍ତ୍ତିତ ହୋଇଛି । ସଂଘର୍ଷ ନଘଟି ଗୋଲକଟି ଯେଉଁଭଳି ଭାବରେ କମ୍ପି ଉଠିଥିଲା, ସେଇଥିରୁ ବୁଝି ଯାଉଛି ସଂଘର୍ଷ ଘଟିଥିଲେ କ'ଣ ହୋଇଥାନ୍ତା !'

ଆର୍ଦ୍ଦା କହିଲେ, 'ଭବିଷ୍ୟତରେ ଯେ ଆପଣଙ୍କ ଦେବତା ଏମିତି ଭାବରେ ବଞ୍ଚାଇ ଦେବେ, ସେ ଭରସା ମୁଁ କରିପାରୁନ ।'

'ଏଥର କିନ୍ତୁ ଅଲୌକିକ ଭାବରେ ବଞ୍ଚି ଯାଇଛନ୍ତି ଆମେମାନେ । ଏପ୍ରକାରର କୌଣସି ପରିଘଟଣାର କାହାଣୀ ମାନବ ଇତିହାସରେ ଆଉ ଦ୍ୱିତୀୟ ନାହିଁ । କ୍ୟାପ୍‌ଟେନ ନକଲ କିଛି ଆଉ କହୁ କହୁ ଥାନ୍ତେ, କିନ୍ତୁ ହଠାତ୍ ଗୋଟିଏ ମୃତ୍ୟୁକାତର ଶବ୍ଦ ଶୁଣି ସେ ନିର୍ବାକ ହୋଇଗଲେ । ସେଇ କରୁଣ ଆର୍ତ୍ତନାଦ ସେମାନଙ୍କର ସର୍ବାଙ୍ଗରେ ଶିହରଣ ଖେଳାଇ ଦେଲା । କିଏ ଏଇ ମହାଶୂନ୍ୟରେ ଆର୍ତ୍ତସ୍ୱରରେ ଚିତ୍କାର କରିଉଠିଲା ?

ପର ମୁହୂର୍ତ୍ତରେ ପୁଣି କାହାର କରୁଣ କଣ୍ଠର ଆର୍ତ୍ତସ୍ୱରରେ ସେମାନେ ସଚେତନେ ହୋଇ ଉଠିଲେ । ତାପରେ କ୍ରମାଗତ ଭାବରେ ଶୁଭିଲା ସେଇ କରୁଣ ଆର୍ତ୍ତ ଯନ୍ତ୍ରଣାର ସ୍ୱର । ନକଲଙ୍କ କଣ୍ଠରେ ଅତ୍ୟନ୍ତ ଭୟଙ୍କର ଲକ୍ଷଣ ପରିସ୍ଫୁଟ ହେଲା, 'ଏଥର ଆମର ଆଉ ରକ୍ଷା ନାହିଁ । ଏଇ ଭୌତିକ ଚିତ୍କାର ପ୍ରକୃତରେ କିନ୍ତୁ ଆମ ମୃତ୍ୟୁର ପୂର୍ବଲକ୍ଷଣ ଘୋଷଣା କରୁଛି ନିଶ୍ଚୟ ।'

'ସେଇ ଉଲ୍‌କାଟାର ପ୍ରେତାତ୍ମା ଏମିତି କାନ୍ଦୁଛି ନା କ'ଣ ?' ବର୍ବିକେନଙ୍କ କଣ୍ଠରେ କେବଳ ଭୟ ନୁହେଁ ବିସ୍ମୟ ମଧ୍ୟ ପ୍ରଚୁର । 'ଅଳ୍ପକପାଇଁ ଆମକୁ କ୍ଷେକାନ୍ତର କରିବ ପାରି ସେଇ ଉଲ୍‌କାଟା· କ୍ଷୋଭ ଓ ଦୁଃଖରେ କାନ୍ଦୁଛି ନା କ'ଣ ?

ମୋହାବିଷ୍ଟ ଭଳି କିଛି ସମୟ ତିନିଜଣ ଛିଡ଼ା ହୋଇ ସେହି ଅବାକ୍ କ୍ରନ୍ଦନ ଶୁଣିବାକୁ ଲାଗିଲେ । ତାପରେ ହଠାତ୍ କଣ ମନେ

ପଡ଼ିବାରୁ ବର୍ବିକେନ ଗୋଟିଏ ସିଡ଼ିଦେଇ ଆକାଶଯାନର ଉପରିସ୍ଥ ଚତ୍ୱରକୁ ଉଠିଗଲେ । ସେଠାରେ ଗୋଟିଏ ଗ୍ରେଟ କୋଠରୀରେ ତାଙ୍କର କୁକୁର ଦୁଇଟିକୁ ବାନ୍ଧି ରଖା ଯାଇଥିଲା ।

ସେ ଯାହା ଭାବିଥିଲେ, ଠିକ୍ ସେଇଆ । ନେପଚ୍ୟୁନ ନାମକ କୁକୁରଟି ସେଠିକି କରୁଣ କଣ୍ଠରେ ଭୁକୁଛି ଓ ସାଟେଲାଇଟ୍ ତାର ପାଦ ଦେଶରେ ନିଷ୍ପନ୍ଦ ହୋଇ ପଡ଼ିରହିଛି । ବର୍ବିକେନ ଚିତ୍କାର କରି କହିଲେ, ଏଇ କାନ୍ଦଣାଟା ଅନ୍ୟକାହାରି ନୁହେଁ ନେପଚ୍ୟୁନର ଚିତ୍କାର । ମନେ ହେଉଛି ସାଟେଲାଇଟ ଆହତ ହୋଇଛି ।

ଉଲ୍କାଟା ସାଙ୍ଗରେ ସଂଘାତ ନହେଲେ ବି, ଉଲ୍କାଟା ଗୋଲକର ପାଖଦେଇ ଭୀଷଣ ବେଗରେ ଛୁଟି ଯାଇଥିଲା ବୋଲି ଗୋଲକଟି ଯେତେବେଳେ ଖୁବ୍ ଯୋରରେ ଥର ଥର ହୋଇ କମ୍ପି ଉଠିଥିଲା, ସେତେବେଳେ ସାଟେଲାଇଟ୍ ଛିଟିକି ପଡ଼ି କାହା ସହିତ ଧକ୍କାବାଜି ଆହତ ହୋଇଛି ବୋଧହୁଏ ।

ସାଟେଲାଇଟକୁ ଧରାଧରି କରି ଚଟାଣରେ ଭଲ ଭାବରେ ପରୀକ୍ଷା କଲେ ବର୍ବିକେନ । କିନ୍ତୁ ତାର ନିଷ୍ପନ୍ଦ ଶରୀରରେ ପ୍ରାଣର ସ୍ପନ୍ଦନ ମିଳିଲା ନାହିଁ । ଅନେକ ସମୟ ଆଗରୁ ତାର ମୃତ୍ୟୁ ହୋଇଛି ।

କିଛି ସମୟ ଆଗରୁ, ଯେତେବେଳେ ଉଲ୍କାଟା ସଙ୍ଗରେ ସଂଘାତ ହେବାକୁ ଯାଉଥିଲା, ଯେତେବେଳେ ବଞ୍ଚିବାର କୌଣସି ସମ୍ଭାବନା ବି ନଥିଲା, ସେତେବେଳେ ଆର୍ଦାଁ ଠଟ୍ଟାକରି ମୃଦୁହସି କହୁଥିଲେ, 'ବିଜ୍ଞାନର ଶୁଭାଶୀର୍ବାଦରେ ଅମର ହେବାକୁ ଯାଉଛନ୍ତି ଆମେମାନେ, ବର୍ତ୍ତମାନ ତ ଆମମାନଙ୍କର ଯଥେଷ୍ଟ ଆନନ୍ଦିତ ହେବା କଥା । ସେଇ ସୌମ୍ୟ, ପ୍ରଫୁଲ୍ଲ ଫରାସୀ ଭଦ୍ରଲୋକଙ୍କର ଚକ୍ଷୁ ସଜଳ ଓ ଝାପସା ହୋଇ ଆସିଲା । କମ୍ପିତ କଣ୍ଠରେ ସେ କେବଳ କହିଲେ, 'ହତଭାଗ୍ୟ ସାଟେଲାଇଟ୍ !'

କିନ୍ତୁ ଏପରି ମୁହ୍ୟମାନ ହୋଇ ରହିବାର ସମୟ ସେତେବେଳେ

ନିଥିଲା । ବର୍ଚ୍ଚିକେନ ପଚ୍ଚରିଲେ 'ବର୍ତ୍ତମାନ ତାହେଲେ କ'ଣ କରିବା ? ପୃଥିବୀ ଓ ଚନ୍ଦ୍ରଲୋକ ମଧ୍ୟବର୍ତ୍ତୀ ମହାଶୂନ୍ୟରେ ସାଟେଲାଇଟକୁ ଆମେମାନେ କପରି ସମାଧି ଦେବା ?'

'ଠିକ କଥା' ମୁଣ୍ଡ ହଲାଇଲେ ନକଲ, କ'ଣ କରିବାକୁ ହେବ କିଛୁ ବୁଝି ପାରୁନି ।'

କିଛି ସମୟ ସମସ୍ତେ ନିର୍ବାକ ହୋଇ ରହିଲେ, ଶେଷରେ ଆର୍ଦ୍ଦି କହିଲେ, 'ଚଟାଣର ଏଇ ଧାତୁର ଢାଙ୍କୁଣୀଟା ଖୋଲି ସାଟେଲାଇଟିକୁ ତଳକୁ ପକାଇ ଦେଲେ ହୁଅନ୍ତା । ଏତେ ଉଚ୍ଚରୁ ପୃଥିବୀରେ ପଡ଼ି ତାର ହାତ ଗୋଡ଼ ଯଦି ଟିକିଏ ବି ଅବଶିଷ୍ଟ ରହେ, ତାହେଲେ କେହି ଜଣେ ହେଲେ ଦେଖି ପାରିଲେ ସେଗୁଡ଼ିକୁ କବର ଦେବାର ବ୍ୟବସ୍ଥା ନିଶ୍ଚୟ କରିବ ।'

ବର୍ଚ୍ଚିକେନ ଧାତୁର ଢାଙ୍କୁଣୀଟା ଖୋଲି ଧରିଲେ । 'ଶୀଘ୍ର ପକାଇ ଦିଅନ୍ତୁ, ନହେଲେ ଏଇ ଫାଙ୍କ ବାଟ ଦେଇ ସମସ୍ତ ଅମ୍ଳଜାନ ନଷ୍ଟ ହୋଇଯିବ ।'

ମହାଶୂନ୍ୟର ସହଚର ସାଟେଲାଇଟକୁ ଶୂନ୍ୟରୁ ଏମିତି ନିକ୍ଷେପ କରିବା ସମୟରେ ଅଧ୍ୟାପକ ଆର୍ଦ୍ଦିଙ୍କ ହାତ ଦୁଇଟି କମ୍ପି ଉଠୁଥିଲା ।

କେଇ ମିନଟ ପରେ ଝରକାରେ ଶୂନ୍ୟକୁ ଚାହିଁ ବର୍ବିକେନ କହିଲେ, 'ମୋର ଭୟ ହେଉଛି, ଆମ ଆକାଶଯାନଟିର ଗତି ବେଗରେ କମ୍ବା ଗତି ପଥରେ କୋଉଠାଏ କିଛି ଗଣ୍ଡଗୋଳ ହୋଇଛି । ମୋ ହିସାବ ଅନୁଯାୟୀରେ ଆମେ ବର୍ତ୍ତମାନ ଚନ୍ଦ୍ରର ଆହୁରି ନିକଟବର୍ତ୍ତୀ ହେବା ଉଚିତ ଥିଲା ।'

'ସତରେ କ'ଣ କିଛି ଗଣ୍ଡଗୋଳ ହୋଇଛି ?' ଉଦ୍‌ଗ୍ରୀବ ହୋଇ ଅର୍ଦାଁ ପଚାରିଲେ ।

ଉତ୍ତରରେ ବର୍ବିକେନ କହିଲେ, 'ଠିକ୍ ବୁଝି ପାରୁନି । ତେବେ ଭୟ ହେଉଛି, କିଛି ଗୋଟାଏ ଗଣ୍ଡଗୋଳ ନିଶ୍ଚୟ ହୋଇଛି ।'

ଟେଲିସ୍କୋପରେ ଆଖି ରଖି ଅର୍ଦାଁ ବାହାରକୁ ଦୃଷ୍ଟିପାତ କଲେ ଏବଂ ତତ୍‌କ୍ଷଣାତ୍ ଚିତ୍କାର କରି ଉଠିଲେ, 'ଆରେ, ଆରେ ! ଏଟା କି ନିକଷ ଦେଖାଯାଉଛି !'

'ଦେଖେ, ଦେଖେ,' କହି ବର୍ବିକେନ ସାଗ୍ରହରେ ଆଗେଇ ଆସିଲେ । ସେ କହିଲେ, 'ଏଇ ଟେଲିସ୍କୋପଟା ଆମକୁ ଯଦି କୌଣସି ନିଶ୍ଚିତ ଖବର ଦେଇପାରେ, ତେବେ ତ ଭଲ ।'

ଟେଲିସ୍କୋପରେ ଦୃଷ୍ଟି ନିବଦ୍ଧ କରି ବର୍ବିକେନ ସବିସ୍ମୟରେ ଦେଖିଲେ ଯେ, ମହାଶୂନ୍ୟର ନକ୍ଷତ୍ରମାଳା ମଧ୍ୟରେ ଗୋଟିଏ କ୍ଷୁଦ୍ର ଏବଂ ସେହି ଗୋଟିଏ ନକ୍ଷତ୍ରକୁ କେନ୍ଦ୍ରକରି ତାର ଚତୁର୍ଦ୍ଦିଗରେ

ଘୁରୁଛୁ, 'ଆରେ ! ଏତ ଆମ ସାଟେଲାଇଟ ! ବ୍ୟାପାରଟା ବୁଝି ପାରୁଛୁ । ତାର ତ କୌଣସି ନିଜସ୍ୱ ଗତିବେଗ ନାହିଁ, ଯଦ୍ୱାରା କି ସେ ନିଜକୁ ଧାବମାନ କରାଇ ପାରିବ, ସେଇ କାରଣରୁ ତାକୁ ନିକଟବର୍ତ୍ତୀ ନକ୍ଷତ୍ରର ଚତୁର୍ଦ୍ଦିଗରେ ଏପରି ଭାବରେ ଘୁରିବାକୁ ହେଉଛୁ । ଆମ ଆକାଶଯାନପରି ସେ ଚନ୍ଦ୍ରର ଏତେ ନିକଟବର୍ତ୍ତୀ ନୁହେଁ ଯେ, ତାର ମାଧ୍ୟାକର୍ଷଣ ଶକ୍ତିର ଆକର୍ଷଣରେ ଚନ୍ଦ୍ରରେ ଯାଇ ପହଞ୍ଚିବ । ପୃଥିବୀର ମାଧ୍ୟାକର୍ଷଣ ମଧ୍ୟ ତାକୁ ସେପରି ଆକର୍ଷଣ କରୁନି । ତେଣୁ ନିକଟରେ ଯେଉଁ ନକ୍ଷତ୍ର ଥିଲା ତାର ମାଧ୍ୟାକର୍ଷଣରେ ପଡ଼ି ବର୍ତ୍ତମାନ ସେଇ ନକ୍ଷତ୍ରକୁ କେନ୍ଦ୍ରକରି ତାକୁ ଘୁରିବାକୁ ହେଉଛୁ ।'

ଏମିତି ସମୟରେ ହଠାତ୍ ନିକଲଙ୍କର ଅବାକ୍ କଣ୍ଠସ୍ୱର ଶୁଭିଲା, 'ଆରେ, ଏକ କାଣ୍ଡ ! ଦେଖନ୍ତୁ, ଦେଖନ୍ତୁ—ମୋ ଦୂରବୀକ୍ଷଣଟା ଶୂନ୍ୟରେ ଭାସୁଛୁ ।'

ଏପରି ଅସମ୍ଭବ କଥାଶୁଣି ତତ୍‌କ୍ଷଣାତ୍ ଆର୍ଦାଁ ଓ ବର୍ବିକେନ ସବିସ୍ମୟରେ ଫେରି ଚାହିଁଲେ ।

କିଛୁ ସମୟ ଲକ୍ଷ୍ୟକରି ବର୍ବିକେନ ଘଟଣାଟା ବ୍ୟାଖ୍ୟା କଲେ, ବୁଝିପାରୁଛୁ । ଆମେ ବର୍ତ୍ତମାନ ମହାଶୂନ୍ୟର ଏପରି ଏକ ରହସ୍ୟମୟ ଅଞ୍ଚଳରେ ପ୍ରବେଶ କରିଛନ୍ତି ଯେଉଁଠି ଆମମାନଙ୍କ ଉପରେ ପୃଥିବୀ କିମ୍ବା ଚନ୍ଦ୍ର କେହି କାହାରି ମାଧ୍ୟାକର୍ଷଣର ଜୋର ଖଟାଇ ପାରୁ-ନାହାନ୍ତି । ବର୍ତ୍ତମାନ ଆମେମାନେ ଚନ୍ଦ୍ର ଓ ପୃଥିବୀ, ଉଭୟଙ୍କର ଅଭିକର୍ଷଣ ଶକ୍ତି ସୀମ ର ବାହାରେ ।'

ମାଧ୍ୟାକର୍ଷଣ କାହାକୁ କହନ୍ତି, ସେଇଟିକୁ ଏଥର ସ୍ପଷ୍ଟ ଭାବରେ ବୁଝି ନିଆଯାଉ ।

ଏକଥା ସମସ୍ତେ ଜାଣନ୍ତି ଯେ ପୃଥିବୀ ଗୋଲ ; ପୁରାପୁରି ଗୋଲ ନୁହଁ, ଉତ୍ତର ଓ ଦକ୍ଷିଣରେ ସାମାନ୍ୟ ପରିମାଣରେ ଚେପଟା ।

ଏଇ ଚେଷ୍ଟା ଅଂଶଟିଏ ଯେ ସାମାନ୍ୟ ଯେ ପୃଥିବୀକୁ ଗୋଲକାର କହିଲେ ବିଶେଷ ଭୁଲ୍ ହେବନି । ସେଥି ସଙ୍ଗେ ସଙ୍ଗେ ଏକଥା ମଧ୍ୟ ସମସ୍ତେ ଜାଣନ୍ତି ଯେ ମେରୁ ରେଖାକୁ ଅକ୍ଷକରି ଅତି ପ୍ରଚଣ୍ଡ ବେଗରେ ନିଟୁପରି ଘୂରୁଛି ।

ଗୋଟିଏ ପଙ୍କବୋଳା ବଲ ଯଦି ଭୀଷଣ ବେଗରେ ଘୂରାଯାଏ, ତାହେଲେ ସେଇ ବଲ ଦେହରୁ ପଙ୍କ ଚତୁର୍ଦ୍ଦିଗକୁ ଛିଟିକି ପଡ଼ିବ । କିନ୍ତୁ ଏଇ ଗୋଲ ପୃଥିବୀ ଅନବରତ ଏତେ ଜୋରରେ ଘୂରିବା ସତ୍ତ୍ୱେବି ତା ଉପରୁ ଆମେମାନେ ଛିଟିକି ପଡ଼ନ୍ତି ନାହିଁ କାହିଁକି ?

ମାଧ୍ୟାକର୍ଷଣ ପାଇଁ ପଡ଼ନ୍ତି ନାହିଁ । ବୈଜ୍ଞାନିକ ପରି ଭାଷାରେ ଯାହାର ନାମ ହେଲା ଅଭିକର୍ଷ । ସୋଜା କଥାରେ କହିବାକୁ ଗଲେ, ଏହି ଅଭିକର୍ଷ ହିଁ ହେଉଛି ଟାଣି ରଖିବାର ଜୋର । ଦୂରକୁ ଦୂରକୁ ନିକ୍ଷେପ କରି ଦେବାର ଯେଉଁ ଜୋର, ତାରନାମ କେନ୍ଦ୍ରାତିଗ ଶକ୍ତି, ତାଠାରୁ ଅଭିକର୍ଷର କ୍ଷମତା ବେଶୀ ଏବଂ ଏଇ କାରଣରୁ ଆମେମାନେ ପୃଥିବୀ ଉପରେ ରହିପାରୁ ଥାଉଁ · ନହେଲେ କେତେବେଳେ ଯେ କେଉଁ ଶୂନ୍ୟକୁ ଛିଟିକି ପଡ଼ନ୍ତେ ତାର କୌଣସି ଠିକ୍ ଠିକଣା ନାହିଁ । ଅଭିକର୍ଷର ଆକର୍ଷଣ ପୃଥିବୀର ସବୁଠାରେ; ଛୋଟ ବଡ଼ ସବୁ ଜିନିଷରେ ଅଛି ; ପ୍ରତ୍ୟେକ ଜିନିଷ ପ୍ରତ୍ୟେକ ଜିନିଷକୁ ଆକର୍ଷଣ କରୁଛି । କେବଳ ପୃଥିବୀ କାହିଁକି, ଏହି ସୌର ଜଗତରେ ସମସ୍ତ ଜଡ଼ପଦାର୍ଥରେ ଏଇ ଆକର୍ଷଣ ଓତଃପ୍ରୋତ ଭାବରେ ଅଛି, ସେଇ କାରଣରୁ ଅନେକ ଏହାକୁ 'ମହାକର୍ଷ' ମଧ୍ୟ କହିଥାନ୍ତି ।

ମହାକାଶର ପ୍ରତ୍ୟେକ ଘଟଣାବଳୀ ଯେଉଁ ଆଇନକାନୁନ୍ ଅନୁସାରେ ନିୟନ୍ତ୍ରିତ ହୁଏ, ସେଇ ନିୟମକାନୁନ ଆବିଷ୍କାର କରିଥିଲେ ନିଉଟନ । ଦୁଇଟି ଜିନିଷ ମଧ୍ୟରେ ପାରସ୍ପରିକ ଆକର୍ଷଣର ଜୋର ଜିନିଷଟିର ଗୁରୁତ୍ୱ ଉପରେ ନିର୍ଭର କରେ । ପୁନଶ୍ଚ ଜିନିଷ

ଦୁଇଟି ନିକଟତର ହେଲେ ଆକର୍ଷଣର ତୀବ୍ରତା ବଢ଼ିବ । ଏବଂ ବ୍ୟବଧାନ ବଢ଼ିଲେ ତୀବ୍ରତା କ୍ରମଶଃ କମିଯିବ । ଅର୍ଥାତ୍ ଆକର୍ଷଣର ହ୍ରାସବୃଦ୍ଧି ହୁଏ ଜିନିଷ ଦୁଇଟିର ଗୁରୁତ୍ୱ ଅନୁଯାୟୀ ଏବଂ ଦୁଇଟି ଜିନିଷର ବ୍ୟବଧାନ ଯେତେ ବଢେ ଆକର୍ଷଣ ଶକ୍ତି କମିଯାଏ ତାର ବର୍ଗଗୁଣ ବ୍ୟବଧାନ ଯେତେ କମି ଆସେ ଆକର୍ଷଣ ଶକ୍ତି ତାର ବର୍ଗଗୁଣ ବଢିଯାଏ । ଅର୍ଥାତ୍ ଦୂରତ୍ୱ ଯେତେ ବେଶୀ ଆକର୍ଷଣର ଜୋର ତାର ବର୍ଗ ଅନୁସାରେ ସେତେ କମ । ଏହି ଆଇନ-କାନୁନ୍‌ଗୁଡ଼ିକ ଯେ ସତ୍ୟ, ଏବଂ ସବଂଯ ଏହାର ପ୍ରଭାବ ବିସ୍ତାରିତ ସେଥିରେ ସନ୍ଦେହର କୌଣସି ଅବକାଶ ନାହିଁ । ସମସ୍ତ ବିଶ୍ୱରେ ଗ୍ରହ ଉପଗ୍ରହରେ—ଏଇ ମହାକର୍ଷଣଶକ୍ତି ଚମତ୍କାର ଏହି ନିୟମରେ କାମକରି ଚାଲିଛି ।

ବର୍ବିକେନଙ୍କ ଗୋଲକଟି ମହାଶୂନ୍ୟର ଏପରି ଏକ ଅଞ୍ଚଳରେ ଆସି ପହଞ୍ଚିଥିଲା, ଯେଉଁଠି ପୃଥିବୀର ଆକର୍ଷଣ ଶକ୍ତି ଆଉ ପହଞ୍ଚି ପାରିବ ନାହିଁ । ପୁଣି ଚନ୍ଦ୍ରଠାରୁ ତାର ଦୂରତ୍ୱ ପ୍ରଚୁର ବୋଲି, ଚନ୍ଦ୍ରର ମାଧ୍ୟାକର୍ଷଣ ମଧ୍ୟ ତାକୁ ଆକର୍ଷଣ କରି ପାରୁନି ।

ଏଇ ମାଧ୍ୟାକର୍ଷଣ ନଥିଲେ ଯେ କ'ଣ ସବୁ ଘଟୁଥାନ୍ତା ସେଗୁଡ଼ିକ ଖିଆଲରେ ବୁଝିହୋଇ ହେବନି । ଆମେମାନେ ଯେ କେଉଁ ଶୂନ୍ୟକୁ ଛିଟିକି ପଡ଼ିଥାନ୍ତୁ ତାର କୌଣସି ଠିକ ଠିକଣା ନଥାନ୍ତା । ଯାହା ଦେଖି ନିଉଟନ ମାଧ୍ୟାକର୍ଷଣ ଆବିଷ୍କାର କରିଥିଲେ, ସେଇ କଥା ଚିନ୍ତାକରି ଦେଖିବା । ମାଧ୍ୟାକର୍ଷଣ ଅଛି ବୋଲି ଫଳ ମାଟିରେ ପଡ଼ୁଛି । ନହେଲେ ପଡ଼ନ୍ତା ନାହିଁ, ଶୂନ୍ୟରେ ଝୁଲି ରହନ୍ତା, କିମ୍ବା କେହି ଡେଇଁ ପଡ଼ିଲେ ସେ ଆଉ ତଳକୁ ନଖସି ଉପରକୁ ଉଠନ୍ତା । କାରଣ କୌଣସି ବସ୍ତୁ ଯେତେବେଳେ ଆକର୍ଷଣ କରୁନି, ତେଣୁ ଡେଇଁବାବେଳେ ଯେଉଁ ଗତି ସଞ୍ଚାରିତ ହୁଅନ୍ତା ତାହା ବାଧା ନପାଇବାରୁ କେବେହେଲେ କମ୍ ହୋଇ ଆସନ୍ତା

ନାହିଁ ଏବଂ ଶେଷ ନ ହୁଅନ୍ତା ଟୋଲ୍‌ ନମାଗଣ ଖୁବରେ ଉପରକୁ ଉଠିବାକୁ ହୁଅନ୍ତା । ସବୁଠାରୁ ବଡ଼ କଥା ହେଲା ମାଧ୍ୟାକର୍ଷଣ ନଥିଲେ କୌଣସି ଜିନିଷର ଓଜନ ନଥାନ୍ତା ।

ମାଧ୍ୟାକର୍ଷଣ ନଥିବାରୁ ବର୍ବିକେନଙ୍କର ସେଇ ଆକାଶଯାନରେ ନାନାପ୍ରକାର ଅଦ୍ଭୁତ, ହାସ୍ୟକର ଓ ବିଚିତ୍ର ଘଟଣାମାନ ସୃଷ୍ଟି ହେବାକୁ ଲାଗିଲା । ବର୍ବିକେନ ଶୀଘ୍ର ଝରକା ପାଖକୁ ଯିବାକୁ ପାଦ ଉଠାଇବା ମାତ୍ରେ ଏକଦମ୍‌ ଗୁମ୍ବଜକୁ ଉଠିଯାଇ ଧାତୁନିର୍ମିତ ଛାତ୍ଟୀରେ ପିଟି ହୋଇଗଲେ । ଅଘାତ ପାଇବା ସଙ୍ଗେ ସଙ୍ଗେ ଗୋଡ ନିମ୍ନମୁଖୀ ହେଲା । ସୁତରାଂ ଆର୍ଦାଙ୍କ ଉପରେ ପଡ଼ିବା ପଡ଼ିବା ଅବସ୍ଥା । କିନ୍ତୁ ସେଠାରେ ମଧ୍ୟ ସ୍ଥିର ହୋଇ ଛିଡ଼ା ହୋଇ ହେଲା ନାହିଁ । ପୁଣି ଉପରେ ଉଠିବାକୁ ହେଲା । ଶୂନ୍ୟରେ ଝୁଲିବାକୁ ଲାଗିଲେ ତିନିଜଣ । ଟେଲିସ୍କୋପଟା ମଧ୍ୟ ସେମିତି ଝୁଲିବାକୁ ଲାଗିଲା ।

ଆର୍ଦାଁ ଶୂନ୍ୟରେ ସେଇ ଝୁଲନ୍ତ ଅବସ୍ଥାରେ କହିଲେ, 'ଆମେମାନେ ଏପରି ଏକ ଅଞ୍ଚଳରେ ଆସି ପହଞ୍ଚିଛନ୍ତି ସେଠି ଓଜନର କୌଣସି ମୂଲ୍ୟ ନାହିଁ ।'

'ଆମର ରୋମାଞ୍ଚକର ଅଭିଯାନର ଏଇ ପର୍ଯ୍ୟାୟରେ ପହଞ୍ଚି ମୁଁ କିନ୍ତୁ ଯଥେଷ୍ଟ ଖୁସୀ ହୋଇଛି ।' ନିକଲ କହିଲେ, 'କିନ୍ତୁ ଏତେବେଳକୁ ତ ଆମର ଚନ୍ଦ୍ରର ଆହୁରି ନିକଟବର୍ତ୍ତୀ ହେବାର କଥା ! ଏ କଥା ମୁଁ ଠିକ୍‌ ବୁଝିପାରୁନି । କେଉଁଥିପାଇଁ ଆମର ସମସ୍ତ ହିସାବରେ ଗଣ୍ଡଗୋଳ ହେଲା ।'

'ମୁଁ ସେଟାକୁ କିନ୍ତୁ ଏବେ ବୁଝିପାରିଛି ।' ବର୍ବିକେନ କହିଲେ, 'ଆମ ହିସାବରେ କିଛି ଗଣ୍ଡଗୋଳ ହୋଇନି । ସେଇ ସର୍ବନାଶୀ ଭୟଙ୍କର ଉଲ୍‌କାଟା ଏଇ କାଣ୍ଡଟା କରିଦେଇ ଯାଇଛି । ଉଲ୍‌କାଟା ଆମ ଗୋଲକର ପାଖଦେଇ ଗଲାବେଳେ ତା'ର ପ୍ରଚଣ୍ଡ

ଗଣ୍ଡର ଆନ୍ଦୋଳନରେ ଆମ ଗୋଲକର ଗଣ୍ଡପଥରେ କିଞ୍ଚିତ ବାଧା ସୃଷ୍ଟି କରି ଯାଇଛୁ ।'

ହଠାତ୍ ନକଲ ଆନନ୍ଦରେ ଚିତ୍କାର କରି ଉଠିଲେ, 'ମାଧ୍ୟାକର୍ଷଣରେ କିଞ୍ଚିତ ପ୍ରଭାବ ଅନୁଭବ କରି ପାରୁଛୁ । ଅର୍ଥାତ୍ ଚନ୍ଦ୍ରର ପାଖାପାଖି ଆସି ଆମେ ପହଞ୍ଚି ଯାଇଛନ୍ତି ।'

ଏକଥା ଯେମିତ ଶୁଣିଛନ୍ତି ଅଧ୍ୟାପକ ଆର୍ଦ୍ଦିଁ । ଶିଘ୍ର ଶିଘ୍ର କାଚ ଝରକା ନିକଟକୁ ଯିବାକୁ ଚେଷ୍ଟା କଲେ । କିନ୍ତୁ ଗୋଲକ ଉପରେ ସେପର୍ଯ୍ୟନ୍ତ ଚନ୍ଦ୍ରର ମାଧ୍ୟାକର୍ଷଣର ପ୍ରଭାବତ ଆଉ ପଡ଼ିନ । ତେଣୁ ଚକ୍ଷୁ ପଲକରେ ଝରକାରେ ପ୍ରଚଣ୍ଡ ଏକ ଧକ୍କା ଖାଇଲେ । ଆର୍ଦ୍ଦିଁ ବ୍ୟଥା ନିଶ୍ଚୟ ଅନୁଭବ କରୁଥିଲେ, କିନ୍ତୁ ଏତେ ନିକଟରୁ ଚନ୍ଦ୍ର ଦର୍ଶନର ଆନନ୍ଦ ନିକଟରେ ଏଇ ତୁଚ୍ଛ ଆଘାତକୁ ଖାତିର କରିବାକୁ ତାଙ୍କର କ'ଣ ସମୟ ଅଛି ? ଶ୍ରେଷ୍ଠ ପିଲାଙ୍କପରି ପାଟିକରି ଉଠିଲେ ଯେ, 'ଦେଖନ୍ତୁ ! ଦେଖନ୍ତୁ ! ଚନ୍ଦ୍ର—ଆମ ସ୍ୱପ୍ନର ଚନ୍ଦ୍ର ଲୋକ ।'

ବର୍ବିକେନ ରୁଦ୍ଧ କଣ୍ଠରେ କେବଳ ଏତିକି କହି ପାରିଲେ, 'ତାହେଲେ ସତରେ ଆମେ ଚନ୍ଦ୍ରକୁ ଯାଉଛେ ।'

ଅବଶେଷରେ ଆକାଂକ୍ଷିତ ଉପଗ୍ରହର ଭୂପୃଷ୍ଠ ଦେଖାଗଲା ।

ଦେଖାଗଲା ବିଶାଳ ଗିରିମାଳା, ଧାଡ଼ି ଧାଡ଼ି ଆଗ୍ନେୟଗିରି ଏବଂ ଅଗ୍ନ୍ୟୁଦ୍‌ଗାର ଜନିତ ଅସମତଳ ଅବଡ଼ା ଖାବଡ଼ା ଚନ୍ଦ୍ରଲୋକର ତ୍ୱକ୍ । ନଦୀପରି ସୁଦୂର ପ୍ରସାରିତ ଖାଲ୍ ଦେଖାଗଲା—ଦେଖି ନଦୀପରି ମନେହେଲା, ପାଣି ଅଛି କି ନାଁ ଦୂରରୁ ସ୍ପଷ୍ଟ ବୁଝି ହେଲା ନାହିଁ ।

ପୃଥିବୀର ତ୍ୱକ ଗଠନ ଇତିହାସର ପ୍ରଥମ ପର୍ଯ୍ୟାୟରେ ବାରମ୍ବାର ବହୁ ମନ୍ଥନ, ଆଲୋଡ଼ନ, ଉଦ୍‌ଗୀରଣ, ପ୍ଲାବନ, କମ୍ପନ ଇତ୍ୟାଦି ସଂଘଟିତ ହୋଇଛି । ଯୁଗ ପରେ ଯୁଗ ଏଇ ଭାବରେ ମନ୍ଥନ ମଧ୍ୟରେ କଟିଯିବା ପରେ ଭୂତ୍ୱକ କ୍ରମଶଃ ଶାନ୍ତ ହୋଇଛି ଏବଂ ତାପରେ ଏଇ ପୃଥିବୀ ହୋଇଛି ଜୀବଧାତ୍ରୀ । ପ୍ରାଣୀଜଗତ ଅଭିବ୍ୟକ୍ତିର ଶେଷ ପର୍ଯ୍ୟାୟରେ ଆବିର୍ଭୂତ ହୋଇଛି ମାନବଜାତି, ଭୂତତ୍ତ୍ୱବିଦମାନଙ୍କ ମତରେ 'ଅତି ଆଧୁନିକ' ଯୁଗରେ । ତାପରେ ମଣିଷର ଐତିହାସିକ ଯୁଗ ଆରମ୍ଭ ହେବା ପରେ ମଧ୍ୟ ଧରଣୀ ତଳେ ଭୂକମ୍ପନ, ଅଗ୍ନ୍ୟୁତ୍ପାତ ପ୍ରଭୃତି କେତେ ଘଟଣା ଦୁର୍ଘଟଣା ହୋଇଗଲା, ଯାହାର କଥିତ ବୃତ୍ତାନ୍ତ ଇତିହାସ ଓ ପୁରାଣ ପୃଷ୍ଠାରେ ଲିପିବଦ୍ଧ ହୋଇଛି । ତେବେ ସେକାଳର ସେଇସବୁ ପ୍ରଳୟଙ୍କରୀ ଆଲୋଡ଼ନ, ଉଦ୍‌ଗୀରଣ ଓ ବନ୍ୟା ପ୍ରଭୃତି ଫଳରେ ସମୁଦ୍ର ତଳରୁ ବିଶାଳ ପର୍ବତ ମୁଣ୍ଡ ଟେକି ଉଠେ, ସମସ୍ତ ସମୟରେ ଗୋଟାଏ ଗୋଟାଏ

ମହାଦେଶ ସମ୍ପୂର୍ଣ୍ଣ ରୂପେ ବିଲୀନ ହୋଇ ଯାଉଥିଲା ସମୁଦ୍ରରେ । ଆଜି ସେସବୁ ଘଟୁନି, ଭୂତଳର ଅବସ୍ଥା ବର୍ତ୍ତମାନ ମୋଟାମୋଟି ଶାନ୍ତ, ଅବଶ୍ୟ ସମ୍ପୂର୍ଣ୍ଣ ଶାନ୍ତ ବର୍ତ୍ତମାନ ହୋଇ ପାରିନି । ଭୂତଳର ଆକୁଞ୍ଚନ ଓ ପ୍ରସାରଣ ସମୁଦ୍ରରେ ଉଠାଏ ପ୍ରବଳ ତୋଫାନ, ଆଗ୍ନେୟଗିରିର ପ୍ରବଳ ଉଦ୍‌ଗୀରଣ, ଭୟାବହ ଭୂମିକମ୍ପ—ଏସବୁର ନୂତନ ସ୍ଥଳଭାଗର ସୃଷ୍ଟି ମଧ୍ୟ ଆଜି ବି ସମ୍ଭବ । ଅସମାନ ପଦକ୍ଷେପରେ ଯୁଗ ପରେ ଯୁଗ ଅତିକ୍ରମିଥାସି ପୃଥିବୀ ଆଜି ଶସ୍ୟଶ୍ୟାମଳା । ପୃଥିବୀର ସୃଷ୍ଟି ମୁହୂର୍ତ୍ତରେ ଯେଉଁ ଘନ ଘନ ଆନ୍ଦୋଳନର ସମୟ ଆସିଥିଲା, ଚନ୍ଦ୍ରର ସୃଷ୍ଟି ସେଇ ସମୟରେ । ଚନ୍ଦ୍ରର ଅବସ୍ଥା ବର୍ତ୍ତମାନ କିପରି, କିଏ ଜାଣେ ? ବୈଜ୍ଞାନିକମାନେ ଚନ୍ଦ୍ର ସମ୍ବନ୍ଧରେ ଯାହା କହୁଛନ୍ତି, ତାହା କେବଳ ମାନମନ୍ଦିର ଗୁଡ଼ିକରୁ ଜ୍ୟୋତିଷ ମଣ୍ଡଳରେ ଦୃଷ୍ଟି ନିବଦ୍ଧ କରି, ସୁତରାଂ ସେମାନଙ୍କର ଧାରଣା ଅନୁମାନ ଉପରେ ନିର୍ଭର କରି ଏବଂ ଏଥିରେ ଭୁଲ ହେବା ବିଚିତ୍ର ନୁହେଁ ବରଂ ସମ୍ଭବ । ଏପରିକି ଭୁଲ ଯେ ହୋଇଥାଏ ତାର ଦୃଷ୍ଟାନ୍ତ ବିଜ୍ଞାନର ଇତିହାସରେ କମ ନୁହେଁ ।

ସେଇ ଚନ୍ଦ୍ରର ଚେହେରା ଦେଖାଗଲା, ଦେଖାଗଲା ଖୁବ୍ ପାଖରୁ । ଆଉ ଟିକିଏ ନିକଟକୁ ଯାଇ ପାରିଲେ କେବଳ ଅନ୍ଦାଜ ଉପରେ ନିର୍ଭର କରି ନୁହେଁ ଚନ୍ଦ୍ର ସମ୍ବନ୍ଧରେ ଏକ ସ୍ପଷ୍ଟ ଧାରଣା କରିଯାଇ ପାରିବ । କିନ୍ତୁ ସମ୍ପୂର୍ଣ୍ଣ ଅଭିଜ୍ଞତା ଅର୍ଜନ କରିବାକୁ ହେଲେ ଚନ୍ଦ୍ରରେ ସବୁ ପ୍ରଥମେ ପାଦ ପକାଇବାକୁ ହେବ ।

ଚନ୍ଦ୍ରର ଗୋଟିଏ ଗହ୍ୱର ଉପରେ ବର୍ଗିକେନଙ୍କର ଦୃଷ୍ଟି ପଡ଼ିଲା । ଟେଲିସ୍କୋପରେ ଅଖି ରଖି ସେ କହିଲେ, 'କୌଣସି କୌଣସି ଜ୍ୟୋତିର୍ବିଦ୍‌ମାନଙ୍କର ମତ ଚନ୍ଦ୍ରର ଗହ୍ୱରଗୁଡ଼ିକ ଚନ୍ଦ୍ରବାସୀଙ୍କର କୀର୍ତ୍ତି, ଚନ୍ଦ୍ରବାସୀମାନେ ଏସବୁ ଖୋଳିଛନ୍ତି । ଏଇ ହେଲା ସେମାନଙ୍କର ଅଭିମତ ।'

ଆର୍ଦ୍ଦୋ ପଚାରିଲେ, 'ସେମାନଙ୍କ ମତରେ ଏଇ ଗହ୍ୱରଗୁଡ଼ିକ କାହିଁକି ହୋଇଛି ?'

'ପ୍ରଖର ସୌରତାପ ଓ ପ୍ରଚଣ୍ଡ ଶୀତରୁ ରକ୍ଷା ପାଇବା ପାଇଁ । ମନେ ରଖିଥିବେ, ଗୋଟିଏ ଚାନ୍ଦ୍ରଦିନ ପୃଥିବୀର ପନ୍ଦର ଦିନ ସଙ୍ଗେ ସମାନ ।'

ହଠାତ୍ ଆର୍ଦ୍ଦୋ ବିସ୍ମିତ କଣ୍ଠରେ କହିଲେ, 'ଆରେ ! ଏ ତ ଚାଷ ହୋଇଥିବା ଜମି !'

ନିକଲ କହିଲେ, 'ଯାହା ଦେଖି ଆପଣ ଚାଷ କରା ଜମିବୋଲି କହିଲେ, ମୋର ମନେ ହେଉଛି ସେଗୁଡ଼ିକ ଶୁଖିଲା ନଈନାଳ ଓ ଜମି ।'

'ଅସଲି ଫସଲ ଭରା ଜମି, ଗଛଲତା ବା ଘରଦ୍ୱାର ହୁଏତ ଏଇସବୁ ଗହ୍ୱର ଭିତରେ ଦେଖିବାକୁ ମିଳିବ,' —ବର୍ବିକେନ କହିଲେ ।

ଆର୍ଦ୍ଦୋ କହିଲେ, 'ଆପଣଙ୍କର ଗବେଷଣା ଠିକ୍ ବା ଭୁଲ, ତାହା ଆବିଷ୍କାର କରିବାର ସୌଭାଗ୍ୟ ଶୀଘ୍ର ଆମମାନଙ୍କର ହେବ ବୋଲି ଆଶା କରୁଛି ।'

ହଠାତ୍ ଆକାଶଯାନର ଭିତର ଅନ୍ଧାର ହୋଇଗଲା । ତିନିଜଣ ଏକସାଙ୍ଗରେ ୱିଣ୍ଡୋରେ ବାହାରକୁ ଚାହିଁଲେ । ନିକଲ କହିଲେ, 'ଏଥର ଆମେ ଚନ୍ଦ୍ରର ଅନ୍ଧକାର ଅଞ୍ଚଳ ମଧ୍ୟ ଦେଇ ଯାଉଛନ୍ତି । ଆମ ଆକାଶଯାନ ଏଥର ଚନ୍ଦ୍ରର ତ୍ରୁସ୍ୟାମସ୍ଥ ଅଞ୍ଚଳରେ ପ୍ରବେଶ କରିଛି ।'

'ଅର୍ଥାତ୍ ଚନ୍ଦ୍ରର ଯେଉଁ ଅଂଶରେ ରାତି, ଆମେ ସେଇ ଅଞ୍ଚଳ ଦେଇ ଯାଉଛନ୍ତି ତ ? ତା'ହେଲେ ତ ଅସୁବିଧା କଥା, କାହିଁକନା ଗୋଟିଏ ଚନ୍ଦ୍ରରାତିର ଅର୍ଥ ପୃଥିବୀର ପନ୍ଦର ରାତି ।'

'ତାପମାତ୍ରା କମି ଯାଉଛି ।' ବର୍ବିକେନ ଆଉ ଗୋଟିଏ ନିଦାରୁଣ ତଥ୍ୟ ପରିବେଷଣ କଲେ । 'ଗ୍ୟାସ ଟିକେ କମ୍ ଖର୍ଚ୍ଚ

କିଦେବ । ଅମ ଭଣ୍ଡାରରେ ବେଶି ଗ୍ୟାସ ନାହିଁ, ତା'ଉପରେ ସରବରାହ ସୀମିତ । ହେଉଛି ନ ହେଲେ ନୂଆ ତା'ଠାରୁ ସାମାନ୍ୟ ଅଧିକ ଖର୍ଚ୍ଚ କଲେ ଚଳିବନ ।'

'ଆକାଶଯାନଟିର ବର୍ତ୍ତମାନ ଗତିବେଗ ଆମକୁ ସତ୍ୱର ପୁଣି ଚନ୍ଦ୍ରର ଦିବାଲୋକିତ ଅଞ୍ଚଳରେ ପହଞ୍ଚାଇ ଦେବ,' ଆର୍ଦାଁ କହିଲେ ।

'ସେ ପର୍ଯ୍ୟନ୍ତ ଗ୍ୟାସର ଉତ୍ତାପ ସାହାଯ୍ୟରେ ଏଇ ହାଡ଼ଭଙ୍ଗା, ରକ୍ତ ଜମାଟ ବନ୍ଧା ଶୀତ ହାତରୁ ଆତ୍ମରକ୍ଷା କରିବାକୁ ହେବ ।'

କିନ୍ତୁ ଚନ୍ଦ୍ରଲୋକର ସେଇ ପ୍ରଚଣ୍ଡ ଥଣ୍ଡା କ'ଣ ଗ୍ୟାସର ଉତ୍ତାପର ବାଧା ମାନେ ? ବାହାରେ ଚନ୍ଦ୍ର ପୃଷ୍ଠରେ ଏହାର ମଧ୍ୟରେ ତୁଷାର ପାତ ଆରମ୍ଭ ହୋଇ ଯାଇଛି । ଗୋଲକ ମଧ୍ୟରେ ତିନିଜଣ ଥର ଥର ହୋଇ କମ୍ପିବାକୁ ଲାଗିଲେ । ବ୍ୟାରୋମିଟରର ପାରଦ କେତେ-ବେଳୁ ଶୂନ୍ୟ ଡିଗ୍ରୀର ଅନେକ ତଳକୁ ଖସି ଯାଇଛି ।

'ହାଡ଼ରୁ ହାଡ଼ ଯେମିତି ବାଜି ଯାଉଛି !' ଆର୍ଦାଁ ଜାକିଜୁକି ହୋଇ ବସିବାର ଚେଷ୍ଟା କରି କହିଲେ, 'ଶୀତରେ ବରଫ ପାଲଟି ଯାଉଛି ! ଶେଷରେ ଶୀତରେ ଆମର ଯେମିତି ମୃତ୍ୟୁ ନ ହୁଏ— ମୋର ସବୁଠାରୁ ବଡ଼ ଭୟ ସେଇଟା ।'

'କୌଣସି ପ୍ରକାର ସମ୍ଭାଳି ହୋଇ ରହନ୍ତୁ ।' ଯେମିତି କମ୍ପି କମ୍ପି ନିକଲ କହିଲେ, 'ଧୈର୍ଯ୍ୟ ଧରନ୍ତୁ । ଶିଘ୍ର ଆମେମାନେ ଚନ୍ଦ୍ରର ଦିବାଲୋକିତ ଅଞ୍ଚଳରେ ପହଞ୍ଚିବା । ଚନ୍ଦ୍ର ପୃଷ୍ଠରେ ଅବତରଣ କରିବାକୁ ଗୋଟାଏ ଭଲ ସ୍ଥାନ ବି ସେତେବେଳକୁ ମିଳିବ ।'

ବାର୍ବିକେନ କହିଲେ, 'ଦିବାଲୋକିତ ଅଞ୍ଚଳରେ ପହଞ୍ଚିଲେ କିନ୍ତୁ ଆମର ସବୁ ସମସ୍ୟାର ସମାଧାନ ହେବନାହିଁ । ଆମମାନଙ୍କ ପକ୍ଷରେ ପ୍ରକୃତ ପ୍ରୟୋଜନୀୟ ହେଲା ତଳକୁ ଅର୍ଥାତ ଚନ୍ଦ୍ରକୁ ଓହ୍ଲାଇବା । ଚନ୍ଦ୍ରର ଚତୁର୍ଦ୍ଦିଗରେ ଏଇ ସର୍ବନାଶା ପରିଭ୍ରମଣରେ ଆମର ଲାଭ କ'ଣ ? ଆମେ ଯଦି ବନ୍ଦୀ ନ ହୋଇ ଏମିତି

ଆବର୍ତ୍ତନ କରିବାକୁ ଆରମ୍ଭ କରିବା, ତେବେ ତାର ପ୍ରଚ୍ଛନ୍ନ ଅର୍ଥ କଣ ହେବ—ବୁଝି ପାରୁଛନ୍ତି ତ ? ଆମେ ବର୍ତ୍ତମାନ ଚନ୍ଦ୍ରର ମାଧ୍ୟାକର୍ଷଣ ସୀମା ଭିତରକୁ ଆସି ଯାଇଛନ୍ତି । ସୁତରାଂ ଆମେ ଯଦି କୌଣସିମତେ ଚନ୍ଦ୍ର ପୃଷ୍ଠରେ ଅବତରଣ ନକରି ପାରନ୍ତି ତେବେ ଆମକୁ ମଧ୍ୟ ସାଟେଲାଇଟ ପରି ମହାଶୂନ୍ୟରେ ଚନ୍ଦ୍ରକୁ କେନ୍ଦ୍ରକରି ଘୂରିବାକୁ ହେବ । ଏଇଟା ଯେପରି ନହୁଏ, ସେଥିପାଇଁ ଆଗରୁ ଆମକୁ ଯାହା ହେଉ କିଛି ଗୋଟାଏ କରିବାକୁ ହେବ ।'

ନିକଲ ଓ ଆର୍ଦାଁ ଦୁଇଜଣ ଏକସାଙ୍ଗରେ ଚିତ୍କାର କରି ଉଠିଲେ, 'ତା ମାନେ ? ତା ମାନେ ଆପଣ କହିବାକୁ ଚାହୁଁଛନ୍ତି—।'

'ହଁ, ଆପଣମାନେ ଯାହା ଭାବୁଛନ୍ତି, ମୁଁ ସେଇ କଥା କହିବାକୁ ଚାହୁଁଛି । ଶେଷକୁ ଏଇଆ ଆମ ଭାଗ୍ୟରେ ନଥିଲେ ହୁଏ !'

ଯଦି ବର୍ବିକେନଙ୍କ ଧାରଣା ସତ ହୁଏ, ତାହେଲେ ଗୋଲ-କଟିକୁ ଚିରକାଳ ପାଇଁ ଚନ୍ଦ୍ରଲୋକର ଚତୁର୍ଦ୍ଦିଗରେ ବୃତ୍ତାକାରରେ ଆବର୍ତ୍ତନ କରି ଚାଲିବାକୁ ହେବ । କୌଣସି ଦିନ ଚନ୍ଦ୍ରରେ ପହଞ୍ଚି ପାରିବ ନାହିଁ, ପୁଣି ଦୂରକୁ ମଧ୍ୟ ଚାଲିଯାଇ ପାରିବ ନାହିଁ । ଯୁଗ ପରେ ଯୁଗ ଏମିତି ଘୂରି ଘୂରି ମରିବାକୁ ହେବ ।

'ଆମେ ଠିକ କେତେବେଳେ ଆମ ଆଶାହୀନ ଭବିଷ୍ୟତକୁ ଜାଣି ପାରିବା ?' ବ୍ୟଗ୍ର କଣ୍ଠରେ ଆର୍ଦାଁ ପଚାରିଲେ ।

'ଯେତେବେଳେ ଆମେ ଦିବାଲୋକିତ ଅଞ୍ଚଳରେ ପ୍ରବେଶ କରିବା, ତତ୍କ୍ଷଣାତ୍ ଆମ ବିପଦ ଆପଣା ଛାଏ ପ୍ରକାଶିତ ହୋଇ ପଡ଼ିବ । ଦିବାଲୋକିତ ଅଞ୍ଚଳରେ ପ୍ରବେଶ କରିବା ଆଗରୁ ଆମେ ଯଦି ଚନ୍ଦ୍ରର ନିକଟତର ନ ହୁଅନ୍ତି, ତାହେଲେ ମୃତ୍ୟୁ ସୁନିଶ୍ଚିତ ।'

ରୁଦ୍ଧ ନିଶ୍ୱାସରେ ସମସ୍ତ କଟିବାକୁ ଲାଗିଲା । ମୁଣ୍ଡ ଉପରେ ଯେମିତି ଗୋଟିଏ ବୋଝ ଲଦି ହୋଇଗଲା, ତେଣୁ ଶ୍ୱାସପ୍ରଶ୍ୱାସ

ଯିବା ଆସିବାର ମଧ୍ୟ ଜାଣି ହେଲା ନାହିଁ । ଏକ ଅନାଗତ ଅଚଳ ଦ୍ରୁତଧାବମାନ ଅଶୁଭ ମୁହୂର୍ତ୍ତର ଅମଙ୍ଗଳ ଇଂଗିତ ଯେପରି ଦୁଃସହ ମୂର୍ଚ୍ଛାରେ ଆଗେଇ ଆସୁଛି । ପଥର ମୂର୍ତ୍ତିପରି ନିଷ୍ପଲକ ଆଖିରେ ତିନିଜଣଯାକ ଚାହିଁ ରହିଲେ ଝରକା ଆଡ଼କୁ । କିନ୍ତୁ ସମସ୍ତ ଯେମିତି ଆଉ ସଜୀବ ନାହିଁ, ସେ ଯେମିତି ସେଇମାନଙ୍କ ପରି ପାଷାଣ ପାଲଟି ଯାଇଛି ।

ଏହିପରି ଭାବରେ ତିନିଘଣ୍ଟା କଟିଲା, ଅଥଚ ସେମାନଙ୍କର ମନେହେଲା, ଯେମିତି ତିନି ଶତାବ୍ଦୀ କଟିଗଲା ।

ହଠାତ୍ ନିସ୍ତବ୍ଧତା ଭଙ୍ଗକରି ନିକଲ୍ ପଚାରିଲେ, 'ଆପଣ କଣ ପୁଣି ଦିବାଲୋକିତ ଅଞ୍ଚଳରେ ପ୍ରବେଶ କରିବାକୁ ଯାଉଛନ୍ତି ?'

ଆର୍ଦାଁ କହିଲେ, 'ତାହେଲେ ସତରେ ଚନ୍ଦ୍ରରେ ଆମେ ଓହ୍ଲାଇ ପାରିବା ନାହିଁ ?'

ଟେଲିସ୍କୋପରେ ଆଖି ରଖୁ ରଖୁ ବର୍ବିକେନ କହିଲେ, 'ଭଲ ଭାବରେ ଦେଖିସାରି ମୁହୂର୍ତ୍ତକ ମଧ୍ୟରେ ଆମର ଭାଗ୍ୟଫଳ ଘୋଷଣା କରି ପାରିବି ବୋଲି ଆଶା କରୁଛି । ଚନ୍ଦ୍ର ଉପରେ ଆମର ପଦଚିହ୍ନ ପଡ଼ିବ କି ନା, ଏକମୁହୂର୍ତ୍ତ ମଧ୍ୟରେ ତାହା ଜଣାଯିବ ।'

କିନ୍ତୁ ପର ମୁହୂର୍ତ୍ତରେ ଟେଲିସ୍କୋପରୁ ଦୃଷ୍ଟି ଫେରାଇ ଆଣିଲେ ବର୍ବିକେନ । ଗମ୍ଭୀର ସ୍ୱରରେ ଘୋଷଣାକଲେ, 'ମୁଁ ଅତ୍ୟନ୍ତ ଦୁଃଖିତ । ଆଉ ଆମର ପରିତ୍ରାଣ ନାହିଁ । ମୃତ୍ୟୁ ଆସି ଆମକୁ ମୁକ୍ତ ନଦେଲା ପର୍ଯ୍ୟନ୍ତ, ଆମେ ଚନ୍ଦ୍ରର ଉପଗ୍ରହ ଭାବରେ ଚନ୍ଦ୍ରକୁ ଆବର୍ତ୍ତନ କରି ଘୁରିବାକୁ ହେବ । କୂଳ ନିକଟକୁ ଆସି ଡଙ୍ଗା ବୁଡ଼ି ଯିବାର ପୃଥିବୀରେ ଯେତୋଟି ନଜିର ଅଛି, ଆମର ଏଇ ଅଭିଯାନ ମଧ୍ୟ ସେହିପରି ଗୋଟିଏ ହେଲା । ଆମମାନଙ୍କର ନିଜର ବଞ୍ଚିବାର ଶକ୍ତି ଆଉ ନାହିଁ ।'

ବିମୂଢ଼ ଅଭିଯାତ୍ରୀମାନଙ୍କ ମଧ୍ୟରେ ଗଭୀର ନିସ୍ତବ୍ଧତା

ବିରାଜମାନ କଲା । ସମସ୍ତେ କଥା କହିବାର ଶକ୍ତି ହରାଇଥିଲେ । ସ୍ପନ୍ଦନ ରହିତ ପରି ତିନିଜଣ ରୂପସ୍ତୂପ ଛିଡ଼ାହୋଇ ରହିଲେ ।

ହଠାତ୍ ନାଚିଉଠିଲେ ଆର୍ଦାଁ । 'ଆମ ହାବେଲଗୁଡ଼ିକ ବର୍ତ୍ତମାନ ବ୍ୟବହାର କରାଯାଇ ପାରିବନି ?'

ହାବେଲଗୁଡ଼ିକ ତ ଅଣାଯାଇଛି ଚନ୍ଦ୍ରରେ ଅବତରଣ ସମୟରେ ଗୋଲକର ଗତିବେଗ କମାଇବା ପାଇଁ ।' ନିକଲ୍ ସ୍ଥିର କଣ୍ଠରେ କହିଲେ ।

'ହାବେଲଗୁଡ଼ିକର କ୍ଷମତା ସୁପ୍ରଚୁର୍, ସେ ବିଷୟରେ ନିଶ୍ଚୟ ଆପଣମାନଙ୍କର ସନ୍ଦେହ ନାହିଁ । ମୋର ମନେ ହୁଏ, ଚିରକାଳ ପାଇଁ ଆବର୍ତ୍ତନର ଯେଉଁ ଆରମ୍ଭ ହେଉଛି ତାକୁ ବ୍ୟାହତ କରିବାକୁ ହାବେଲଗୁଡ଼ିକ ନିଶ୍ଚୟ ଆମକୁ ସାହାଯ୍ୟ କରିପାରେ ।'

କିନ୍ତୁ ଆମେ ଚନ୍ଦ୍ରରେ ଅବତରଣ କରିବା କିପରି ? ବର୍ତ୍ତମାନ ଯଦି ହାବେଲଗୁଡ଼ିକ ଆମେ ବ୍ୟବହାର କରିବା, ତାହେଲେ ଚନ୍ଦ୍ରଲୋକରେ ଆମେ ଆଉ ଅବତରଣ କରି ପାରିବା ନାହିଁ ।'

'ଏଇ ସୁନିଶ୍ଚିତ ମୃତ୍ୟୁ ଠାରୁ ଅନ୍ୟ କିଛି ନିଶ୍ଚୟ ଭଲ ।' ବର୍ବିକେନ ଆର୍ଦାଁଙ୍କ ପ୍ରସ୍ତାବକୁ ସମର୍ଥନ କରି କହିଲେ ।

ହାବେଲଗୁଡ଼ିକ ଯେଉଁଠିଥିଲା ସେଠି ଯାଇ ତିନିଜଣ ତତ୍‌କ୍ଷଣାତ୍ ଉପସ୍ଥିତ ହେଲେ । ଏକତ୍ରିତ ହୋଇଥିବା ହାବେଲଗୁଡ଼ିକର ଉପରେ ଥିବା ଧାତୁର ଢାଙ୍କୁଣୀଗୁଡ଼ିକ ଖୋଲିନେଇ ବର୍ବିକେନ ନିର୍ଦ୍ଦେଶ ଦେଲେ, 'ଶୀଘ୍ର ଶୀଘ୍ର ନିଆଁସିଲି ମାରି ଅଗ୍ନି ସଂଯୋଗ କରନ୍ତୁ ।'

ନିଆଁସିଲି ଜଳାଉ ଜଳାଉ ଆର୍ଦାଁ କହିଲେ, 'ବନ୍ଧୁ ହାବେଲ ବୃନ୍ଦ ! ତୁମେମାନେ ଯଦି କିଞ୍ଚିତ ଅନୁଗ୍ରହ କରି ବିସ୍ଫୋରିତ ହୁଅ ତାହେଲେ ଆମେ ଚନ୍ଦ୍ରରେ ଅବତରଣ କରି ପାରିବୁ । ଆଶା କରୁଛୁ ଆମକୁ କୃତଜ୍ଞତା ଜଣାଇବାର ଅବକାଶ ତୁମେମାନେ

ଦେବ ।' କହୁବା ସଙ୍ଗେ ସଙ୍ଗେ ସେ ସଳିତାରେ ନିଆଁ ଲଗାଇ ଦେଲେ ।

ପଲକମାତ୍ରକେ ଧାତୁର ଢାଙ୍କୁଣୀଟା ବନ୍ଦକରି ଦେଲେ ବର୍ବିକେନ ।

କେତୋଟି ମୁହୂର୍ତ୍ତ ପରେ ଗୋଲକଟି ପ୍ରଚଣ୍ଡ ବେଗରେ କମ୍ପି ଉଠିଲା । କସ୍ତୃଣ୍ଡ ହୋଇ ପଡ଼ୁ ପଡ଼ୁ ଆର୍ଦାଁ ପାଟିକରି କହିଲେ, 'ହ୍ୱାବେଳିବୃନ୍ଦଙ୍କର ପ୍ରସ୍ଥାନ ! ନୂତନ ଦୃଶ୍ୟ ଆରମ୍ଭ ହେବ ଏଥର ।'

ଶକ୍ତିଶାଳୀ ହ୍ୱାବେଳିଗୁଡ଼ିକ ବିସ୍ଫୋରିତ ହୋଇ ସେଇ ବୃତ୍ତାକାର ମୃତ୍ୟୁମୁଖୀ କକ୍ଷ-ପଥରୁ ଗୋଲକଟିକୁ ମୁକ୍ତ କରିଦେଲା ।

ହ୍ୱାବେଳିଗୁଡ଼ିକର ବିସ୍ଫୋରଣ ଫଳରେ ଗୋଲକ ଭିତରେ ଓଲଟି ପଡ଼ିଯାଇ ବର୍ବିକେନ କହିଲେ, 'ଆମେମାନେ ସତରେ ତାହେଲେ ସୌଭାଗ୍ୟବାନ ।'

'ଆମେ କ'ଣ ଚନ୍ଦ୍ରରେ ଓହ୍ଲାଇଛେ ?' ଆର୍ଦାଁ ପଚାରିଲେ ।

କୌଣସି ପ୍ରକାର ନିଜକୁ ସମ୍ଭାଳିନେଇ ଝରକା ନିକଟକୁ ଆଗେଇ ଯାଉଁ ଯାଉଁ ନିକଲ କହିଲେ, 'ଏକ ମିନିଟ ! ମୋର ଭୟ ହେଉଛି, ଆମେ ହୁଏତ ଚନ୍ଦ୍ରଲୋକରେ ଅବତରଣ କରୁ ନାହାନ୍ତି !'

'କ'ଣ କହିଲ ! ତା ଅର୍ଥ ?'

'ଆମ ଗୋଲାଟି ପୃଥିବୀଆଡ଼କୁ ଛୁଟି ଚାଲିଛି ।'

ସଚକିତ ହୋଇ କଥାଟିର ପୁନରାବୃତ୍ତି କଲେ ବର୍ବିକେନ, 'ପୃଥିବୀଆଡ଼କୁ ଛୁଟି ଚାଲିଛି !'

ଏସ୍. ଏସ୍. ସସକ୍ୟୁହାନା ଯୁକ୍ତରାଷ୍ଟ୍ରର ବୃହତ୍ତମ ଜାହାଜମାନଙ୍କ ମଧ୍ୟରୁ ଅନ୍ୟତମ ।

ଜାହାଜଟି ଏକ ଗୁରୁତର ଦାୟିତ୍ୱ ବହନ କରି ପ୍ରଶାନ୍ତ ମହାସାଗରରେ ଭ୍ରମଣ କରୁଥିଲା । ଯୁକ୍ତରାଷ୍ଟ୍ରରୁ ହାଓ୍ୟାଇ ଦ୍ୱୀପକୁ 'ଟେଲିଗ୍ରାଫ କେବଲ୍' ଦ୍ୱାରା ଯୋଗାଯୋଗ ସ୍ଥାପନ କରିବାର ଗୋଟିଏ ବିରାଟ ପରିକଳ୍ପନା ଯୁକ୍ତରାଷ୍ଟ୍ର ସରକାର ଗ୍ରହଣ କରିଥିଲେ । ସେଥିପାଇଁ ଏସ. ଏସ. ସସକ୍ୟୁହାନା ଉପରେ ଭାର ପଡ଼ିଥିଲା ହନଲୁଲୁ ଓ ସାନଫ୍ରାନ୍‌ସିସ୍କୋ ମଧ୍ୟବର୍ତ୍ତୀ ପ୍ରଶାନ୍ତ ମହାସାଗରର ଜଳର ଗଭୀରତା ପରିମାପର । ସେଇ ଦାୟିତ୍ୱ ନେଇ ଏସ. ଏସ. ସସକ୍ୟୁହାନାର ପ୍ରଶାନ୍ତ ମହାସାଗରରେ ଏଇ ଅଭିଯାନ ।

ଡେକ୍ ଉପରେ ଛିଡ଼ାହୋଇ ଜାହାଜର କ୍ୟାପ୍‌ଟେନ ତାଙ୍କର ସହକାରୀଙ୍କ ସହିତ କଥାବାର୍ତ୍ତା ହେଉଥିଲେ, ଅନ୍ୟାନ୍ୟ ନାବିକମାନେ ଜଳର ଗଭୀରତା ପରିମାପରେ ବ୍ୟସ୍ତ ।

କ୍ୟାପ୍‌ଟେନ ପଚାରିଲେ, 'ଏଠାରେ ଜଳ କେତେ ଗଭୀର ବର୍ତ୍ତମାନ ପର୍ଯ୍ୟନ୍ତ କ'ଣ ସେଟା ମାପ ହୋଇ ପାରିନି ନାହିଁ ?'

ସନ୍ଧକାଗ୍ଧ ଜବାବ ଦେଲେ, 'ଛଜନହଜାର ପାଞ୍ଚଶ ଆଠ ଫ୍ୟାଦମ୍ ପର୍ଯ୍ୟନ୍ତ ମପା ଯାଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ଜଳର ତଳଦେଶରେ ପହଞ୍ଚି ପାରି ନାହାନ୍ତି ।'

'ମୋର ମନେ ହେଉଛି ଏଇ ଅଞ୍ଚଳଟା ପ୍ରଶାନ୍ତ ମହାସାଗର ମଧ୍ୟରେ ସବୁଠାରୁ ଗଭୀର ।'

'ଜଳର ଏତେ ତଳେ ଯେଉଁ ଜୀବନ ତାହା ନିଶ୍ଚୟ ଚନ୍ଦ୍ରଲୋକ ପରି ବିସ୍ମୟକର ।'

'ଚନ୍ଦ୍ରଲୋକର କଥା କହୁଛ ?' କ୍ୟାପ୍‌ଟେନ କହିଲେ, ମୋତେ ଖୁବ ଆଶ୍ଚର୍ଯ୍ୟ ଲାଗୁଛି ! ବଲ୍‌ଟି ମୋର ଗନକ୍ଲବର ସେଇ ଦୁଃସାହାସୀ ତିନି ବନ୍ଧୁ କେଉଁ ଚନ୍ଦ୍ରଲୋକକୁ ଯେ ଯାତ୍ରା କରିଛନ୍ତି, ସେକଥା ଭାବି ମୁଁ ବିସ୍ମିତ ହେଉଛି ।'

ସେମାନଙ୍କ କଥାବାର୍ତ୍ତାରେ ବାଧା ଦେଇ ହଠାତ୍ ଜଣେ ନାବିକ ଚିତ୍କାର କରି ଉଠିଲା, 'ଆକାଶକୁ ଚାହିଁ ଦେଖନ୍ତୁ କ୍ୟାପ୍‌ଟେନ ।'

କଥା ଶେଷ ହେଉ ନହେଉଣୁ ବର୍ବିକେନଙ୍କ ଗୋଲକ ପ୍ରଚଣ୍ଡ ବେଗରେ ଆସି ଜଳ ଉପରେ ପିଟି ହୋଇଗଲା ଏବଂ ପଲକମାତ୍ରକେ ବୁଡ଼ିଗଲା । ସଙ୍ଗେ ସଙ୍ଗେ ପ୍ରଚଣ୍ଡ ଜଳାବର୍ତ୍ତରେ ଜାହାଜଟା ତୀବ୍ର ବେଗରେ ଚକ୍ରକ ପରି ଘୁରିଗଲା ।

ଜାହାଜର ରେଲିଂ ଧରି କୌଣସିମତେ ନିଜକୁ ସମ୍ଭାଳି ନେଉଁ ନେଉଁ କ୍ୟାପ୍‌ଟେନ କହିଲେ, 'ଦେଖିଲେ, ତମ ଚନ୍ଦ୍ରଲୋକ ଯାତ୍ରୀମାନେ ପୃଥିବୀର ଭୂମିରେ ଅବତରଣ କଲେ ।'

ଡେକ ଉପରେ ପଶିଯାଇଥିବା ଢେଉ ହାତରୁ ନିଜକୁ ରକ୍ଷା କରୁ କରୁ ସନ୍ଧକାଗ୍ଧ କ୍ୟାପ୍‌ଟେନ କହିଲେ, 'ଠିକ୍ ଭୂମିରେ ନୁହେଁ, ସାଗର ଜଳରେ ।

କିଛି ସମୟ ମଧ୍ୟରେ ଚନ୍ଦ୍ର ଯାତ୍ରୀମାନଙ୍କୁ ଖୋଜିବାକୁ ଗୋଟିଏ

ଅନ୍ୱେଷଣ-ବାହିନୀ ବାହାରି ପଡ଼ିଲା । କିନ୍ତୁ କେତେ ଘଣ୍ଟା ଧରି ପାଖଆଖର ସମୁଦ୍ର ଖିନଭିନ୍ କରି ଖୋଜି ମଧ୍ୟ କୌଣସି ଜନମନର ଚିହ୍ନ ନଦେଖି ପାରି ସେମାନେ ବ୍ୟର୍ଥ ହୋଇ ଫେରି ଆସିଲେ । କ୍ୟାପ୍ଟେନ ଯେତେବେଳେ ଶୁଣିଲେ ଚନ୍ଦ୍ର ଯାତ୍ରୀମାନଙ୍କର କୌଣସି ପତ୍ତା ନାହିଁ, ସେ ସାଙ୍ଗେ ସାଙ୍ଗେ ନିର୍ଦ୍ଦେଶ ଦେଲେ, 'ସନ୍ଧ୍ୟା ପର୍ଯ୍ୟନ୍ତ ସତର୍କତା ସହିତ ଖୋଜ, ସେମାନେ ଯେଉଁଆଡ଼େ ଗଲେ; ନମିଳିଲେ ଅନ୍ୟ ବ୍ୟବସ୍ଥା କରିବାକୁ ହେବ ।'

କିନ୍ତୁ ଅଯଥା ଏଇ ଖୋଜା ଖୋଜି । ସନ୍ଧ୍ୟା ହୋଇ ଆସିଲା, ତଥାପି ସେମାନଙ୍କର କୌଣସି ଚିହ୍ନ ବି ଦେଖାଗଲା ନାହିଁ । ଶେଷରେ ସହକାରୀ କ୍ୟାପ୍ଟେନ ପ୍ରସ୍ତାବ କଲେ, 'ଏଠାକାର ଅକ୍ଷାଂଶ ଓ ଦ୍ରାଘିମା ସବୁ ଆମେ ଜାଣେନ୍ତ, ସୁତରାଂ ପୁଣି ଆମେ ଏଠିକୁ ଫେରି ଆସି ପାରିବା । ବର୍ତ୍ତମାନ ବରଂ ଜାହାଜ ସାନ୍-ଫ୍ରାନ୍‌ସିସ୍‌କୋକୁ ଫେରିଇ ନେଇ କର୍ତ୍ତୃପକ୍ଷଙ୍କୁ ସବୁ କଥା ଖୋଲି କହିବା । ମନେହୁଏ ଆମେ ପୁଣି ଗୋଟିଏ ବଡ଼ ଧରଣର ଅନ୍ୱେଷଣ ବାହିନୀ, ଅର୍ଥାତ୍ ଷଢମତ ଗୋଟାଏ ନୌବହର ସମେତ ଏଠାକୁ ଫେରି ଆସି ପାରିବା ।'

କ୍ୟାପ୍ଟେନ ଏ ପ୍ରସ୍ତାବରେ ରାଜି ହେଲେ । କହିଲେ, 'ଚମତ୍କାର ପରିକଳ୍ପନା କରିଛ । ମୁଁ ଯଥାଶିଘ୍ର ସାନଫ୍ରାନ୍‌ସିସକୋ ଯିବାର ବ୍ୟବସ୍ଥା କରୁଛି । ଏଥି ମଧ୍ୟରେ, ଚନ୍ଦ୍ରରୁ ଏଇ ଅଭୁତ ପ୍ରତ୍ୟାବର୍ତ୍ତନର ପ୍ରଚଣ୍ଡ ଆଘାତ ପାଇ ମଧ୍ୟ ଆମର ବନ୍ଧୁଗଣ ଯଦି ମରିଯାଇ ନଥାନ୍ତି, ତାହେଲେ ମୁଁ ନିଶ୍ଚିତ ଭାବରେ ଜାଣେ ଯେ, ସେମାନଙ୍କ ସାଙ୍ଗରେ ଯେଉଁ ଅମ୍ଳଜାନ ଅଛି ତା ସାହାଯ୍ୟରେ ଜଳରେ ବୁଡ଼ି ମରିବାରୁ ରକ୍ଷା ପାଇଯିବେ ।'

କ୍ୟାପ୍ଟେନ ତତ୍‌କ୍ଷଣାତ୍ ସାନଫ୍ରାନ୍‌ସିସକୋ ଯାତ୍ରା କରିବାର ବ୍ୟବସ୍ଥା କଲେ । ବେତାର ଯନ୍ତ୍ରର ଅସ୍ୱବବଶତଃ ଏସ୍. ଏସ୍.

ସେପକ୍ୟୁହ୍ଲାନାର ପକ୍ଷରେ ଏହା ବ୍ୟତୀତ ଅନ୍ୟକିଛୁ କରଣୀୟ ନଥିଲା ।

ଅନ୍ୟ ଢଗରେ ବର୍ବିକେନଙ୍କର ସେଇ ବିଶାଳ ଗୋଲକଟି ନଙ୍ଗର ବିହୀନ ନୌକାପରି କିଛି ସମୟ ଖୁବ୍ ବେଗରେ ଚକାଭଉଁରି ଖେଳି ପ୍ରଶାନ୍ତ ମହାସାଗରର ଅତଳ ଜଳର ତଳେ କେତେ ଯୁଗକୁ ବନ୍ଦୀ ହୋଇ ରହିଲା, କିଏ ଜାଣେ ?

ସାନଫ୍ରାନ୍‌ସିସ୍‌କୋ ଜେଟିରେ ଛିଡ଼ାହୋଇ ଜଣେ ନାବିକ ନୀଳ ଓ ସବୁଜ ପତାକା ହଲାଉଥିଲା । ନାବିକଟିର ପଛରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଛିଡ଼ା ହୋଇ ଥିଲେ । ଦୂର ଦିଗନ୍ତରେ ଗୋଟିଏ ଜାହାଜ ଧୀରେ ଧୀରେ ସ୍ପଷ୍ଟ ହୋଇ ଉଠୁଥିଲା ।

‘କି ବ୍ୟାପାର ? ହଠାତ୍ ଗୋଟାଏ ଜାହାଜ ଏ ଆଡ଼କୁ ଆସୁଛି ? ଏଇ ସମୟରେ ଏଠାକୁ ତ କୌଣସି ଜାହାଜ ଆସିବା କଥା ନୁହଁ !’

‘ଏସ୍. ଏସ୍. ସସ୍କ୍ୟୁହାନା ଫେରି ଆସୁଛି ।’ ସଭ୍ରମର ସହିତ ନାବିକଟି ଜଣାଇଲା, ‘ଜାହାଜରୁ ସଙ୍କେତ ଦ୍ୱାରା ଏଇ କଥା କୁହା ହୋଇଛି ଯେ, ସେମାନେ ସେଇ ଦୁଃସାହସୀ ଚନ୍ଦ୍ରଯାତ୍ରୀମାନଙ୍କର ସାକ୍ଷାତ ପାଇଛନ୍ତି ।’

‘ଆରେ ! ସତନା କ’ଣ ?’

ଟିକେ ପରେ ଏସ୍ ଏସ୍ ସାନଫ୍ରାନ୍‌ସିସ୍‌କୋ କୂଳକୁ ଭିଡ଼ିଲା । ଗୋଟିଏ ମୁହୂର୍ତ୍ତ ଅପେକ୍ଷା ନକରି କ୍ୟାପ୍‌ଟେନ ତାଙ୍କ ସହକାରୀଙ୍କୁ ସାଙ୍ଗରେ ନେଇ କର୍ତ୍ତୃପକ୍ଷଙ୍କ ସହିତ ଦେଖା କରିବାକୁ ଆସିଲେ । ଖବରର ଗତିବେଗ ପବନ ଠାରୁ ମଧ୍ୟ ବେଶୀ, ତାର ପ୍ରମାଣ

ଦେବାକୁ ବୋଧେ ଇତିମଧ୍ୟରେ ଜାହାଜ ସ୍ଥିର ପାଖରେ ନେଇ ଯାଇଥିଲା ।

ସାନ୍‌ଫ୍ରାନ୍‌ସିସ୍କୋର ଆଡମିରାଲ କ୍ୟାପ୍‌ଟେନଙ୍କ ଠାରୁ ସେଇ ବିସ୍ମୟକର କାହାଣୀ ଶୁଣି କହିଲେ, ଏଇ ସମ୍ବାଦ ସରବରାହ ପାଇଁ ଆପଣମାନଙ୍କୁ ଅଶେଷ ଧନ୍ୟବାଦ । ଆମେ ଖବରଟା ବର୍ତ୍ତମାନ ଯୁଦ୍ଧ ବିଭାଗକୁ ଜଣାଇ ଦେଉଛୁ ସେମାନେ ପ୍ରେସିଡେଣ୍ଟଙ୍କୁ ଜଣାଇ ଦେବେ । ଶିଘ୍ର ଉପଯୁକ୍ତ ବ୍ୟବସ୍ଥା ଅବଲମ୍ବନ କରାଯିବ ।'

ନମ୍ରସ୍ୱରରେ ସହକାରୀ କ୍ୟାପ୍‌ଟେନ କହିଲେ, 'କିନ୍ତୁ ତାହାରି ଅନେକ ଡେରି ହୋ'ଇଯିବ । ଆପଣ ବରଂ ଏଖଣି ବାଲ୍‌ଟିମୋର ଗନକ୍ଲବର କର୍ତ୍ତୃପକ୍ଷଙ୍କୁ ଏ ବିଷୟ ଜଣାଇ ଦିଅନ୍ତୁ ।'

'ଠିକ କଥା ।' ସହକାରୀ କ୍ୟାପ୍‌ଟେନଙ୍କ କଥାରେ ସମ୍ମତି ଜଣାଇଲେ ଅଡ୍‌ମିରାଲ, 'ଏହି ବିଶାଳ ବିସ୍ତୃତ ପ୍ରଶାନ୍ତ ମହାସାଗରର ଅତଳ ଜଳରେ ବୁଡ଼ିଯାଇଥିବା ଗୋଲକଟିକୁ ଯଦି ଖୋଜି ନେଇ ପାରନ୍ତି, ତେବେ ସେମାନେ ଗନକ୍ଲବର ସଦସ୍ୟ ଛଡ଼ା ଆଉ କେହି ନୁହଁନ୍ତି ।'

ଘଣ୍ଟାଏ ପରେ ଗନକ୍ଲବର ସମ୍ପାଦକ ମ୍ୟାଟସନଙ୍କୁ ସାନ୍‌ଫ୍ରାନ୍‌ସିସ୍କୋ ଜେଟିରେ ସସକ୍ୟୁହାନାର କ୍ୟାପ୍‌ଟେନଙ୍କ ସହିତ କଥାବାର୍ତ୍ତା କରିବାର ଦେଖାଗଲା ।

ମ୍ୟାଟସନ କହୁଥିଲେ, 'କ୍ୟାପ୍‌ଟେନ, ଆପଣ ଯଦି ଅଭିଯାତ୍ରୀ-ମାନଙ୍କୁ ସମୁଦ୍ରତଳ ବନ୍ଦୀଦଶାରୁ ମୁକ୍ତ କରିବାକୁ ଚାହାନ୍ତି, ତେବେ ଆପଣଙ୍କ ପାଣିତଳୁ ଖୁବ୍ ଭାରି ଜିନିଷ ଉଠାଇବାର ବ୍ୟବସ୍ଥା କରିବାକୁ ହେବ । ମନେ ରଖିବେ, ଗୋଲକଟିର ଓଜନ ଭୀଷଣ ।'

ସେହି ବିରାଟ ଅନ୍ୱେଷଣ କାମର ପ୍ରସ୍ତୁତି ଖୁବ୍ ଶିଘ୍ର ଆରମ୍ଭ ହୋଇଗଲା । ବୁଲି ବୁଲି ସମସ୍ତ ସାଜ ସରଞ୍ଜାମ ଦେଖି ମ୍ୟାଟସନ କହିଲେ, 'ମୁଁ ଆଶାବାଦୀ, କ୍ୟାପ୍‌ଟେନ । ମୁଁ ବର୍ତ୍ତମାନବି ଆଶା

କରୁଛୁ ଓଡ଼ିଶ ଭାଷାର ଶବ୍ଦ ବୃଦ୍ଧି... 

କରୁଛୁ ଓଡ଼ିଆରେ ବଞ୍ଚିବାକୁ କିନ୍ତୁ ଦେଖା ହେଲେ ସେମାନେ କି କଥା କହିବେ, ସେଥା ଅନୁମାନ କରିବା ମୋ କଳ୍ପନାରେ ସମ୍ଭବ ହେଉନି ।'

ଗୋଟାଏ ବିରାଟ 'ବୁଡ଼ା-ଡବା' ସମୁଦ୍ରଯାନର ଉପରେ ରଖା ହୋଇଥିଲା, ଯାହାକୁ ନାବିକମାନଙ୍କ ପରି ଭାଷାରେ 'ବସ୍ଥା'କୁହନ୍ତି । ବୁଡ଼ା-ଡବା କାହାକୁ କହନ୍ତି ତାର ଗୋଟାଏ ଧାରଣା ଥିବା ଦରକାର । ସମୁଦ୍ରତଳ ସମ୍ପର୍କରେ ଯେଉଁମାନେ ଗବେଷଣା କରନ୍ତି, ସେମାନଙ୍କୁ ଏଇ ବୁଡ଼ା ଡବା ସାହାଯ୍ୟରେ ସମୁଦ୍ର ଅଭ୍ୟନ୍ତରରେ ପ୍ରବେଶ କରିବାକୁ ହୁଏ । ଏହା ଭିତରେ ଦୁଇ ତିନିଜଣ ଲୋକ ବସି ପାରିବାର ବ୍ୟବସ୍ଥା ଥାଏ । ଏଥା ଦେଖିବାକୁ ଅନେକାଂଶରେ ଲୁହାର ଗୋଲାପରି, ଏହା ମଧ୍ୟରେ ଅମ୍ଳଜାନ, ସନ୍ଧାନୀ ଆଲୁଅ ପ୍ରଭୃତି ପ୍ରୟୋଜନୀୟ ଜିନିଷ ପତ୍ରର ବିଶେଷ ବ୍ୟବସ୍ଥା ଥାଏ । ଏହା ଭିତରେ ପଶି ଯେଉଁମାନେ ସାଗର ଅଭ୍ୟନ୍ତରକୁ ଯିବେ, ସେମାନେ ଭିତରେ ପଶିଲା ପରେ ବାହାର ପାଖରୁ ଦରଜା ଖୁବ୍ ଭଲ ଭାବରେ ବନ୍ଦକରି ଦିଆଯାଏ । ଏହି ଡବାରେ ଖୁବ୍ ମୋଟା ଏବଂ ବିଶେଷ ଭାବରେ ପ୍ରସ୍ତୁତ ଏକ ପ୍ରକାର ଶକ୍ତ କାଚର ଝରକାଥାଏ । ସନ୍ଧାନୀ - ଆଲୋକ ସାହାଯ୍ୟରେ କାଚର ଝରକାରେ ଦୃଷ୍ଟିପାତ କରି ବୈଜ୍ଞାନିକମାନେ ସମୁଦ୍ରତଳର ଖବର ସଂଗ୍ରହ କରନ୍ତି । କ୍ୟାମେରା ସାହାଯ୍ୟରେ ଏହି ବୁଡ଼ା-ଡବା ମଧ୍ୟରୁ ସମୁଦ୍ର ଗର୍ଭର ଫଟୋ ମଧ୍ୟ ଉଠାହୁଏ । ଏଇ ଡବା ଭିତରୁ ମ୍ୟାଟସନ ସମୁଦ୍ର ତଳେ ଜାହାଜର ଗୋଲ୍‌ଡବିର ସନ୍ଧାନ କରିବେ ।

ଧୀରେ ଧୀରେ ସମସ୍ତ ଯୋଗାଡ଼ ଯନ୍ତ୍ର ଶେଷ ହେବା ପରେ ମ୍ୟାଟସନ କ୍ୟାପ୍‌ଟେନଙ୍କୁ କହିଲେ, 'ଆଉ ତ ଡେରି କଲେ ଚଳିବ ନାହିଁ । ସ୍ଥିର ପାଞ୍ଚଦିନ ବୃଥାରେ କଟିଗଲା । ଆପଣ ଏଥର ଶୀଘ୍ର ଶୀଘ୍ର ବାହାରି ପଡ଼ିବାର ବ୍ୟବସ୍ଥା କରନ୍ତୁ ।'

ତାଙ୍କର ଆଉ ତର ସହୁ ନଥିଲା । ଅବଶ୍ୟ ଏପରି ଅବସ୍ଥାରେ ପଡ଼ିଲେ କିଏ ବା ଅଯଥା ସମସ୍ତ ନଷ୍ଟ କରିବାକୁ ଚାହିଁବ ?

ଟିକେ ପରେ ଅନ୍ୱେଷଣ ବନ୍ଦର ଯାତ୍ରାକଲେ । ପ୍ରଶାନ୍ତ ମହାସାଗରର ସୁନୀଳ ଜଳୋଚ୍ଛ୍ୱାସର ମଧ୍ୟଦେଇ ଘଟଣାସ୍ଥଳ ଅଭିମୁଖରେ ଦ୍ରୁତ ବେଗରେ ଆଗେଇ ଚାଲିଲା ଏସ୍. ଏସ୍. ସନକ୍ଲ୍ୟୁଧ୍ୱାନା ।

ମ୍ୟାଟସନଙ୍କ ସହିତ କ୍ୟାପ୍‌ଟେନ ଏବଂ ତାଙ୍କର ସହକାରୀ ଡେକ୍ ଉପରେ ଛିଡ଼ା ହୋଇଥିଲେ ।

ମ୍ୟାଟସନ ସହକାରୀ କ୍ୟାପ୍‌ଟେନଙ୍କୁ କହୁଥିଲେ, ମୋର ବିଶ୍ୱାସ ଆପଣ ସମୁଦ୍ର ତଳକୁ ମୋର ସହଯାତ୍ରୀ ହେଉଛନ୍ତି ।'

ସହକାରୀ ସାନନ୍ଦରେ ସମ୍ମତି ଜଣାଇଲେ, 'ନିଶ୍ଚୟ ସାର୍, ଏଟା ଠିକ ମୋ ମନୋମତ କାମ ।'

ସମୁଦ୍ରର ଯେଉଁଠି ଗନବୋଟର ଗୋଲକଟି ବୁଡି ଯାଇଥିଲା, ଯଥା ସମୟରେ ସବ୍‌ମେରିନ୍‌ଟି ସେଠାରେ ଆସି ପହଞ୍ଚିଲା ।

ମ୍ୟାଟସନ କହିଲେ, 'ଏଇଠାରୁ ବୁଡ଼ା-ଡବାରେ ଯାଇ ଅନ୍ୱେଷଣ ଆରମ୍ଭ କରିବ କ୍ୟାପ୍‌ଟେନ । ଆପଣ ଶିଘ୍ର ଶିଘ୍ର ତାର ବ୍ୟବସ୍ଥା କରନ୍ତୁ ।'

ବୁଡ଼ା - ଡବା ଭିତରର ସାଜ ସରଞ୍ଜାମ, ଅମ୍ଳଜାନ, ସନ୍ଧାନୀ ଆଲୋକ ପ୍ରଭୃତି ଠିକ୍ ଅଛି କି ନାହିଁ ଭଲ ଭାବରେ ପରୀକ୍ଷା କରାଗଲା । ଅଧଘଣ୍ଟା ଭିତରେ ମ୍ୟାଟସନ ଓ ସହକାରୀ କ୍ୟାପ୍‌ଟେନ ବୁଡ଼ା-ଡବାରେ ଯିବାପାଇଁ ପ୍ରସ୍ତୁତ ହୋଇଗଲେ । ତା ଆଗରୁ କ୍ୟାପ୍‌ଟେନ ମ୍ୟାଟସନଙ୍କୁ ଶୁଭେଚ୍ଛା ଜଣାଇଲେ, 'ମୋର ଶୁଭ କାମନା ରହିଲା । ଆଶା କରୁଛି ଅବିଳମ୍ବେ ଆପଣଙ୍କ ସୁଯୋଗ୍ୟ ବନ୍ଧୁମାନଙ୍କର ସାକ୍ଷାତ ପାଇବେ ।'

ମ୍ୟାଟସନ ଏବଂ ସହକାରୀ କ୍ୟାପ୍‌ଟେନ ବୁଡ଼ା-ଡବା ଭିତରେ ପ୍ରବେଶ କରିବା ପରେ କ୍ୟାପ୍‌ଟେନ ଦରଜାଟା ଭଲ ଭାବରେ ବନ୍ଦକରି ଦେଲେ । ତାପରେ ଦୁଇଜଣ ପ୍ରଶାନ୍ତମହାସାଗର ଭିତରକୁ ନିଖୋଜ ବନ୍ଧୁମାନଙ୍କ ଅନୁସନ୍ଧାନରେ ଓହ୍ଲାଇଲେ ।

ନୀଳସାଗରର ଅନ୍ଧକାର ନିମ୍ନାଂଶ ସନ୍ଧାନୀ ଆଲୋକର ତୀବ୍ର ରଶ୍ମିରେ ଆଲୋକିତ ହୋଇ ଉଠିଲା ।

ସମୁଦ୍ର ତଳର ମାଟିଟା କି ପ୍ରକାର ? ନଦୀ ଜଳ ତଳେ ଯେପରି ପଙ୍କ କାଦୁଅ ବାଲି ଇତ୍ୟାଦି ଅଛି, ସମୁଦ୍ର ତଳେ କଣ ଠିକ୍ ସେମିତି ? ଏ ପ୍ରଶ୍ନର ଉତ୍ତର କିନ୍ତୁ ନେତିବାଚକ, କାହିଁକି ନା ମାଟି କାଦୁଅ ବାଲି ନଦୀର ଦୁଇ କୂଳରୁ ଧୋଇ ଆଣିଥିବା ସାମଗ୍ରୀ । ସମୁଦ୍ରର ବାଲି ସେହିଭଳି, ତୀରବର୍ତ୍ତୀ ଜମି ଓ ପଥର ଭାଙ୍ଗି ଚୂନା ହୋଇ ତାର ଜନ୍ମ, ତେଣୁ ଉପକୂଳ ନିକଟରେ ବାଲି ଓ ପଥର କିଛି କିଛି ମିଳେ । ଏଇସବୁ ଭଙ୍ଗା ପଥର ଓ ବାଲି ଦ୍ୱାରା ଉପକୂଳ ପାଖ ଆଖ ଅଞ୍ଚଳର ସମୁଦ୍ର ତଳ ଗହ୍ୱରଗୁଡ଼ିକ ଭର୍ତ୍ତି ହୋଇଥାଏ । ଉପକୂଳ ଠାରୁ ଦୂରରେ ଗଭୀର ସମୁଦ୍ର ଭିତରେ ଆଉ ପଥର ବା ବାଲି ନାହିଁ । ସେଠାର ସମୁଦ୍ରଗର୍ଭ ଏକ ପ୍ରକାର ଧଳାଗୁଣ୍ଡଦ୍ୱାରା ଆବୃତ, ଏଗୁଡ଼ିକ ନାନାପ୍ରକାର ସାମୁଦ୍ରିକ ଜୀବର ଦେହାବଶେଷରୁ ସୃଷ୍ଟି । କେବଳ ଶାମୁକା ନୁହଁ, ଆହୁରି ଅନେକ ପ୍ରକାର ଶକ୍ତ-ଖୋଳ ବିଶିଷ୍ଟ ପ୍ରାଣୀ ସମୁଦ୍ର ତଳେ ବାସ କରନ୍ତି । ଏହିସବୁ ପ୍ରାଣୀଙ୍କର ଦେହାବଶେଷ ଯୁଗ ଯୁଗ ଧରି ସେଠାରେ ଜମା ହେଉଛି । ତାଛଡ଼ା ସମୁଦ୍ରର ଅଗାଧ ଜଳରେ ଅନେକ ଛୋଟ ଛୋଟ ପ୍ରାଣୀ ଥାନ୍ତି, ଯାହାଙ୍କ ଦେହାବଶେଷ ହଜାର ହଜାର ବର୍ଷଧରି ସମୁଦ୍ର ତଳେ ପଡ଼ି ରହୁଛି । ଏହି ସବୁ ପଦାର୍ଥର ଏକ ମୋଟା ଓ କଠିନ ଆବରଣରେ ଗଭୀର ସମୁଦ୍ର ଗର୍ଭ ଆଚ୍ଛାଦିତ । ଏହାଛଡ଼ା ସମୁଦ୍ର ତଳେ ହଜାର ହଜାର ବର୍ଗମାଇଲ ଧରି ଏକ ପ୍ରକାର ଲାଲ୍‌ମାଟିର

ଆଚ୍ଛାଦନ ଥାଏ । ଅନେକଙ୍କ ମତରେ ଏହାର ସୃଷ୍ଟି ହୋଇଛି ସାମୁଦ୍ରିକ କୌଣସି ଆଗ୍ନେୟ ଗିରିର ଉଦ୍‌ଗୀରଣରୁ, ସମୁଦ୍ରଗର୍ଭର ଆଚ୍ଛାଦନ ଯାହାହେଉ, ସମୁଦ୍ର ତଳ କିନ୍ତୁ ପଥରରେ ଗଠିତ ।

ଏଇ ପୃଥିବୀ ମଧ୍ୟ ପଥରରେ ଗଠିତ । ପୃଥିବୀ କେତେ ବିଚିତ୍ର ଧରଣର ପ୍ରାଣୀଙ୍କର ବାସସ୍ଥାନ । ସମୁଦ୍ର ତଳେ ମଧ୍ୟ ସେହିପରି ହଜାର ପ୍ରକାରର ପ୍ରାଣୀ ଅଛନ୍ତି । ପୃଥିବୀ ପୃଷ୍ଠର ପ୍ରାଣୀମାନଙ୍କ ପରି ସେମାନଙ୍କ ଆହାର ଓ ବାସସ୍ଥାନ ସମୁଦ୍ର ତଳେ ଅଛି । ପୃଥିବୀପୃଷ୍ଠ ପରି ସମୁଦ୍ର ତଳେ ମଧ୍ୟ ନାନା ଧରଣର ଉଦ୍ଭିଦ ଦେଖାଯାଏ ।

ବୁଡ଼ା-ଡଙ୍ଗା ଭିତରୁ ଜଳ ତଳର ବହୁପ୍ରାଣୀ ଓ ଉଦ୍ଭିଦର ସାକ୍ଷାତ ସେମାନେ ପାଇଲେ । କିନ୍ତୁ ସେ ବିଷୟରେ ମୁଣ୍ଡ ଖେଳାଇବା ପରି ସମୟ ସେତେବେଳେ ସେମାନଙ୍କର ନଥିଲା । ଅନ୍ୟ କେଉଁଠିକୁ ନଜର ନଦେଇ ସେମାନେ ତନ୍ନତନ୍ନ କରି ସ୍ଥିର ପାଖରେ ଗନକ୍ଲବର ଗୋଲକଟିକୁ ଖୋଜିବାକୁ ଲାଗିଲେ । ଘଣ୍ଟାପରେ ଘଣ୍ଟା ଅତିବାହିତ ହେଲା । କିନ୍ତୁ କାହିଁ ସେ ଗୋଲକ ? ସେ ଯେମିତି ପବନରେ ମିଳାଇ ଯାଇଛି ।

ଘଣ୍ଟା ଘଣ୍ଟା ଧରି ପାଞ୍ଚଘଣ୍ଟା କଟିଲା ଖୋଜା ଖୋଜିରେ, ତଥାପି ସେହି ନିରୁଦ୍ଦେଶ ଗୋଲକର ଚିହ୍ନବି ଦେଖାଗଲା ନାହିଁ । ଶେଷରେ ସହକାରୀ କ୍ୟାପ୍‌ଟେନ ପଚାରିଲେ, 'ଆମେ କଣ ଆପାତତଃ ଫେରିଯିବା, ମିଷ୍ଟର ମ୍ୟାଟସନ୍ ?'

'ତ'ଛଡ଼ା ଆଉ କଣ କରିବାର ଅଛି ?' ମ୍ୟାଟସନ କ୍ଷୁବ୍ଧ ଭାବରେ କହିଲେ, ବାର୍ବିକେନ ବା ଅନ୍ୟ କାହାରି ଚିହ୍ନବି ଦେଖିବାକୁ ମିଳିଲା ନାହିଁ କେଉଁଠି । 'ଅଯଥା ସମୁଦ୍ର ତଳେ କ'ଣ କରିବା ?' ଏତିକ କହି ବୁଡ଼ା ଡଙ୍ଗାଟିକୁ ଉପରକୁ ଉଠାଇ ନେବାକୁ ସଙ୍କେତରେ ଜାହାଜକୁ ନିର୍ଦ୍ଦେଶ ଦେଲେ ।

ଧୀରେ ଧୀରେ ଜାହାଜ ଉପରକୁ ବୁଡ଼ା ଡବାକୁ ଉଠାହେଲା ।

କ୍ୟାପ୍ଟେନ ସାଗ୍ରହରେ ସେମାନଙ୍କୁ ଅପେକ୍ଷା କରୁଥିଲେ । କ୍ଷୁବ୍ଧ କଣ୍ଠରେ ସହକାରୀ କ୍ୟାପ୍ଟେନ କହିଲେ, 'ଉଁହୁ, କିଛି ଲାଭ ହେଲା ନାହିଁ ।'

'କି ଦୁର୍ଭାଗ୍ୟ !' ଦୁଃଖ କଲେ କ୍ୟାପ୍ଟେନ । 'ଏଥର ତାହେଲେ ଜଳଉପରେ ଥରେ ତନ୍ନ ତନ୍ନ କରି ଖୋଜାଯାଉ ।'

ପାଞ୍ଚଦିନ ଅତିବାହିତ ହୋଇଗଲା ।

କିନ୍ତୁ ଦୁର୍ଭାଗ୍ୟ ଯାହାର ସାଥୀ, ପାଞ୍ଚଦିନ ତାର ପାଞ୍ଚ ଶତାବ୍ଦୀ; ଏବଂ ହତାଶାର କ୍ରମାଗତ ଆଘାତ ସହି ସହି ଦିନେ ତାର ଆଶାର ମଧ୍ୟ ଶେଷ ହୋଇଯାଏ ।

ଡେକ୍ ଉପରେ ଦୂରବୀକ୍ଷଣ ହାତରେ ମ୍ୟାଟସନ ଓ ସହକାରୀ କ୍ୟାପ୍ଟେନ ଛିଡ଼ା ହୋଇଥିଲେ । ମ୍ୟାଟସନ କହିଲେ, 'ଆଶ୍ଚର୍ଯ୍ୟ ! ସେମାନଙ୍କର ପତ୍ତା ନାହିଁ । ଆମମାନଙ୍କୁ କଣ ଶେଷରେ ହତାଶ ହୋଇ ଫେରି ଯିବାକୁ ହେବ !'

ସହକାରୀ କ୍ୟାପ୍ଟେନ କଣ ବା ଆଉ ସାନ୍ତ୍ୱନା ଦେବେ । ଦୂରବୀକ୍ଷଣରେ ନୀରବରେ ଚାରିଆଡ଼ ଦେଖିବାକୁ ଲାଗିଲେ । ଜଳ କେବଳ ମାତ୍ର ଜଳ । ଯେଉଁଆଡ଼କୁ ଆଖି ପାଇବ, ମହାସାଗରର ସୁନୀଳ ଜଳରାଶି ଛଡ଼ା ଆଉ କିଛି ଦେଖାଯାଏନା । ହଠାତ୍ ସେ ଚିତ୍କାର କରି ଉଠିଲେ, 'ଆରେ ! ଦୂରରେ ଏଟା କ'ଣ ଦେଖାଯାଉଛି ?'

ସଚକିତ ମ୍ୟାଟସନ କହିଲେ, 'କଣ ! କଣ ଦେଖି ପାରୁଛନ୍ତି ?'

'ଅଷ୍ଟଷ୍ଟ ଗୋଟାଏ କଣ ଦୂରରେ ଭାସୁଛି ।'

'ତାଉପରେ ପୁଣି ଯୁକ୍ତରାଷ୍ଟ୍ରର ପତାକା ଫର ଫର ହୋଇ ଉଡ଼ୁଛି ! ତାହେଲେ ଏଟା ବୋଧହୁଏ ଗନକ୍ଲବର ଗୋଳକ, କାରଣ ଏଇ ଧରଣର ଚେହେରା କୌଣସି ଜାହାଜର ନାହିଁ ।'

ପ୍ରାୟ ମାଇଲଏ ଦୂରରେ ସମୁଦ୍ର ବକ୍ଷରେ ଅଷ୍ଟଷ୍ଟ କ'ଣ ଗୋଟାଏ ଦେଖା ଯାଉଥିଲା । ତାଉପରେ ଯୁକ୍ତରାଷ୍ଟ୍ରର ପତାକା ଧୀର ପବନରେ ଫର ଫର ହୋଇ ଉଡ଼ୁଛି ।

ତତ୍‌କ୍ଷଣାତ୍‌ ଗୋଟାଏ ଡଙ୍ଗି ଜାହାଜରୁ ସମୁଦ୍ରକୁ ଛଡ଼ାଗଲା । ଦୁଇଜଣ ନାବିକ ଓ ସହକାରୀ କ୍ୟାପ୍‌ଟେନଙ୍କୁ ସାଙ୍ଗରେ ନେଇ ମ୍ୟାଟସନ ବାହାରି ପଡ଼ିଲେ । ମୁହୂର୍ତ୍ତିକ ପାଇଁ ମଧ୍ୟ ଆଖିରୁ ଦୂରବୀକ୍ଷଣଟା କାଢ଼ିଲେ ନାହିଁ ମ୍ୟାଟସନ । ଡଙ୍ଗି କିଛିଦୂର ଆଗେଇବା ପରେ ସେ ଆନନ୍ଦରେ ଚତ୍କାର କରି ଉଠିଲେ, 'ପାଇଛି ! ପାଇଛି ! ଗନକ୍ଲବର ଗୋଳକଟି ଜଳରେ ଭାସୁଛି ।'

ନାବିକମାନେ ଦ୍ରୁତ ଆହୁଲା ଟାଣିଲେ ।

'ଗୋଟାଏ କଥା ମୋ ମୁଣ୍ଡରେ ପଶୁନି ମିଷ୍ଟର ମ୍ୟାଟସନ । ଗୋଳକଟା ତ ପ୍ରଚଣ୍ଡ ବେଗରେ ପଡ଼ି ସମୁଦ୍ରରେ ବୁଡ଼ି ଯାଇଥିଲା । ସ୍ୱାର ଯା'ଦ୍ୱା ଓଜନ, ସେଥିରେ ତ ସ୍ୱାର ଆଉ ଭାସି ଉଠିବା କଥା ନୁହଁ, ତା ସତ୍ତ୍ୱେ ଏଟା କିପରି ଭାସି ଉଠିଲା ମୁଁ ଠିକ ବୁଝି ପାରୁନି ।'

'ଏଟା ତ ଖୁବ୍ ସହଜ କଥା । ଜାହାଜ କାହିଁକି ଜଳରେ ଭାସେ ? ନୌକା କିପରି ଜଳରେ ଭାସେ ? —ଭାସେ ଆପେକ୍ଷିକ ଗୁରୁତ୍ୱ ଲାଗି । ଏବଂ ସେଇ କାରଣରୁ ଗୋଳକଟି ମଧ୍ୟ ପାଣି ଉପରେ ଭାସି ଉଠିଛି ।'

କଥାବାର୍ତ୍ତା ହେଉଁ ହେଉଁ ଡଙ୍ଗଟି ଯାଇଁ ଗୋଳକଟି ନିକଟରେ ପହଞ୍ଚିଲା । ସମୁଦ୍ର ଢେଉର ଶବ୍ଦ ଛଡ଼ା ଅନ୍ୟ କୌଣସି ଶବ୍ଦ

କେଉଁଠାରେ ହେଲେ ନାହିଁ । ଆସ୍ତେ ଆସ୍ତେ ଡଙ୍ଗି ମଧ୍ୟରେ ନିସ୍ତବ୍ଧତା ବିରାଜମାନକଲା । ମ୍ୟାଟସନ କହିଲେ, 'ଜୀବନର କୌଣସି ଚିହ୍ନତ ଦେଖା ଯାଉନି । ଆଶା କରୁଛୁ ସମସ୍ତେ ଜୀବିତ ଅଛନ୍ତି ।'

ଢେଉ ଶବ୍ଦ ସଙ୍ଗରେ ମିଶିଯାଇ ମ୍ୟାଟସନଙ୍କ କଣ୍ଠ କିପରି ନିସ୍ତେଜ ଶୁଭିଲା ।

ଧୀରେ ଧୀରେ ଆଗେଇ ଯାଇ ମ୍ୟାଟସନ ଗୋଲକଟିର ଦରଜା ଖୋଲିଲେ । ସାନନ୍ଦ ବିସ୍ମୟରେ ସେ ଚାହିଁ ଦେଖିଲେ ଦୁଃସାହସୀ ଅଭିଯାତ୍ରୀମାନଙ୍କୁ । ଗୋଲକ ଭିତରୁ ପ୍ରଶ୍ନହେଲା, 'ଘଟଣା କ'ଣ ମିଷ୍ଟର ମ୍ୟାଟସନ ? ସବୁ ଭଲତ ?'

'ଆପଣମାନେ ସବୁ ଭଲ ଅଛନ୍ତିତ ?'

ଗୋଲକ ମଧ୍ୟରୁ ବାହାରି ଆସୁ ଆସୁ ବର୍ବିକେନ କହିଲେ, 'ଖୁବ୍ ଶାନ୍ତ ଭାବରେ ଉପଭୋଗ କରୁଥିଲୁ ଆମେମାନେ ।'

ଧୀରେ ଧୀରେ ତିନିଜଣ ଡଙ୍ଗିକୁ ଉଠିଲେ । ଗନକ୍ଲବର ସଭାପତି ଇମ୍ପେ ବର୍ବିକେନ, ଫରାସୀ ବୈଜ୍ଞାନିକ ଅଧ୍ୟାପକ ମାଇକେଲ ଆର୍ଦାଁ ଏବଂ ରିଚମଣ୍ଡ ନିବାସୀ କ୍ୟାପ୍ଟେନ ନିକଲ । ସର୍ବଶେଷରେ ଡଙ୍ଗି ଉପରକୁ ଆସିଲା ସେମାନଙ୍କ ପ୍ରିୟସଙ୍ଗୀ ନେପଚ୍ୟୁନ ।

'ଆପଣମାନେ କ'ଣ ଖୁବ୍ ଭୟଭୀତ ହୋଇ ପଡ଼ିଥିଲେ ?'

'ଭୟ !' ହୋ ହୋ ହୋଇ ହସି ଉଠିଲେ ବର୍ବିକେନ । 'ଯେତେବେଳେ କୌଣସି ଲୋକ ଚିରକାଳ ପାଇଁ ଚନ୍ଦ୍ରର ଉପଗ୍ରହ ହେବାର ହାତରୁ ରକ୍ଷା ପାଇ ପ୍ରଶାନ୍ତମହାସାଗରର ଜଳ ତଳେ ଦୁଇଲକ୍ଷ ଅସହ୍ୟ ମାଇଲ ଘୁରି ବୁଲିଛି, ସେ ଭୟକୁ ଭୁଲି ଯାଇଛି । ଭୟ ଶବ୍ଦଟା କିପରି ବନାନ କରନ୍ତି ମ୍ୟାଟସନ ?'

# ରାଜଶ୍ରୀ ପକେଟ ବୁକ୍‌ସର ପୁସ୍ତକାବଳୀ

୧ ରୂପ ଭାଙ୍ଗେ
୨ ସେଇ ଝିଅଟି
୩ ସ୍ୱାଚନ୍ଦ ବର୍ତ୍ତୀ
୪ ତୃଷ୍ଣାର୍ତ୍ତ ନୟନ
୫ ଗୋପନ ସ୍ୱରଣୀ
୬ ଏ ନ ନାମ୍ନି ମ ରହସ୍ୟ
୭ ଏ ଷା । ଆଲୁଅ
୮ ଲୁଚୁଙ୍ଗ ଡେଗ
୯ ଲଳିତା ଫବାଦ
୧୦ ଜନାନ୍ତର ରଙ୍ଗ
୧୧ ଲମ୍ବୁଲ ଗୋଟିଏ ଝିଅର ନାମ
୧୨ ଗ୍ରସ୍ତା ସଙ୍ଗିନୀ
୧୩ ଯୌନ ଜୀବନ
୧୪ ଅନ୍ଧାସ୍ତ ମୂଲକ
୧୫ ଜ୍ୱାଳାମୁଖୀ
୧୬ ଶଙ୍ଖନୀଡ଼
୧୭ ସ୍ୱପ୍ନବାଲ ।
୧୮ { ନଃସଙ୍ଗ ନକ୍ଷତ୍ର / ଦ୍ୱିତୀୟ ନାୟିକା }
୧୯ ସୁନୀଳ ଶିଖର
୨୦ ଖୁଣ୍ଟରଙ୍ଗା ଘର

୨୧ ନଷ୍ଟିଲ୍ଲ ଅନ୍ଧକାର ।
୨୨ ବଷକନ୍ୟା
୨୩ ମେଛୁଆ ହତ୍ୟା ମାମଲା
୨୪ ଅପଗ୍ରସ୍ତା
୨୫ ଚନ୍ଦ୍ର ଖନ୍ୟା
୨୬ ନାଗ'ନୀ ଖେଳନା
୨୭ ନଗ ନଣ୍ଟ୍ର
୨୮ { ଶୀତବସନ୍ତ / ପ୍ରଜାପତିର୍ ମନ }
୨୯ ଲବଙ୍ଗ୍ୟଚଉର ଜଳ
୩୦ ଚମ୍ବଲର ବର୍ଣ୍ଣିକା
୩୧ ଇନ୍ଦ୍ରନୀଳ
୩୨ ମାୟା ମୃଗୟା
୩୩ ସାଗରର କ୍ଷୁଧା
୩୪ { ପ୍ରତିଧ୍ୱନି / ଆଗ୍ରାର ଆକାଶ ଲାଲ }
୩୫ ଜଳତରଙ୍ଗ
୩୬ ଚନ୍ଦ୍ର ଅଭିଯାନ
୩୭ କ୍ଳୋହ୍ବତ ଅରଣ୍ୟ (ଯନ୍ତ୍ରସ୍ଥ)
୩୮ ନଗ୍ନିପଦ୍ମ (ଯନ୍ତ୍ରସ୍ଥ)